

Fun 'N' Laughs All The Way

# Mickey AND Donald




## ଗତ ଦୁଇ ବର୍ଷ ହେଲା ସେମାନଙ୍କ ମଧ୍ୟରେ ନିବିଡ଼ ସଂପର୍କ ରହିଆସିଛି।

Anil Kumar Panigrahi

**କ୍ୟାମେଲ ଜ୍ୟାମିତି ବାକ୍ସ**



କ୍ୟାମଲିନ ପ୍ରା. ଲି.
ଆର୍ଟ ମ୍ୟାଟେରିଆଲ ଡିଭିଜନ,
ବମ୍ବେ-୪୦୦ ୦୫୯ (ଭାରତ)

VISION/ORI/811

**Results of Chandamama Camlin Colouring Contest No. 35 (Oriya)**

*1st Prize:* Dileep Kumar Satapathy, Dhenkanal. *2nd Prize:* Ajaya Ka. Maharana, Rourkela-4. *3rd Prize:* Bikram Keshari Pradhan, Angul. Prabina Kumar Sahoo, Cuttack-754 141. Kailash Mahapatra, Chandeswar. Miss Sucharita Mohapatra, Nageswarangi. Kunja Bihari Bala, Balasore. Sri. Ranjit Ku Matii, Bhubaneshwar. Kumari Archana Sahoo, Kendrapara-754 211. Sri. Jitendra Kumar Puri,




**We're all in it together for the fun of it, for the taste of it!**

# ଚନ୍ଦମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

ଏ ସଂଖ୍ୟାର 'ଭାରତ-କାହାଣୀ' ଶେଷ କଥାରେ ଆମେ କୋମ୍ପାନୀ ଅମଳରେ ଭାରତବର୍ଷର ଅବସ୍ଥା ଦେଖିବା। ସ୍ୱାଧୀନତା ସଂଗ୍ରାମର ପ୍ରଥମ ଯୁଗର କିଛି କିଛି କଥା ମଧ୍ୟ ପରିବେଷିତ ହୋଇଛି। ଦେବୀ ଚୌଧୁରାଣୀ ଓ କିତ୍ତୁର ରାଣୀ ବିଦେଶୀ ଶାସନ ବିରୁଦ୍ଧରେ ଯେଉଁ ସଂଗ୍ରାମ ଆରମ୍ଭ କରିଥିଲେ, ତାହାର ସମାପ୍ତି ଘଟିଲା ୧୯୪୭ ରେ।

## ଅମରବାଣୀ

ବିଦ୍ୟା ନ ଶୋଭତେ ପୁଂସୋ, ଯଦି ନ ସ୍ୟାତ୍ ରସଜ୍ଞତା।
ଲବଣେନ ବିନା ଶାକାଃ ସୁପକ୍ୱା ଅପି ନିଷ୍ଫଳା॥

[ତରକାରୀ ଯେତେ ଭଲ ଭାବରେ ରନ୍ଧା ହୋଇଥିଲେ ବି ସେଥିରେ ଲୁଣ ପଡ଼ି ନଥିଲେ ତାହା ଯେପରି ବିସ୍ୱାଦ ହୁଏ, ବିଦ୍ୟା ସହିତ ଯଦି ରସଜ୍ଞାନ ନଥିବ, ସେ ବିଦ୍ୟା ସେହିପରି ନିଷ୍ଫଳ ହୁଏ।]

ବର୍ଷ : ୧୭ ଜୁନ୍ ୧୯୮୪ ଅଙ୍କ : ୧୨

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



# ଜହ୍ନମାମୁଁ ସମ୍ବାଦ



## ଜହ୍ନମାମୁଁଙ୍କ ଅଭିମାନ ?

ଜହ୍ନ କ୍ରମେ ପୃଥିବୀରୁ ଦୂରକୁ ଦୂରକୁ ଘୁଞ୍ଚି ଯାଉଛି ଓ ଧିରେ ଧିରେ ଛୋଟିଆ ଦିଶୁଛି । ଦିନ ଆସିବ, ଯେତେବେଳେ ପୂର୍ଣ୍ଣ ସୂର୍ଯ୍ୟ ପରାଗ ସମ୍ଭବ ହେବ ନାହିଁ । ତେବେ ସେ ଦିନ ଆସିବାକୁ ବହୁ କୋଟି ବର୍ଷ ବାକି ଅଛି ।

## ହଣ୍ଡାରେ ଜଳଯାତ୍ରା

ସ୍ପେନ୍ ଦେଶର ଦୁଇ ତରୁଣ ଗୋଟିଏ ଭୋଜନଶାଳାରୁ ବଡ଼ ହଣ୍ଡାଟିଏ ଧାର ନେଲେ । ଲୋକେ ଭାବିଲେ, ସେମାନେ ବୋଧହୁଏ ଭୋଜି କରିବେ । ନା, ସେ ଦୁହେଁ ସେ ହଣ୍ଡାରେ ବସି ଇବ୍ରୋ ନଦୀରେ ୨୩୦ କିଲୋମିଟର ଜଳଯାତ୍ରା ସମାପ୍ତ କରିଛନ୍ତି !





## ନେପୋଲିଅନ୍‌ଙ୍କ ପୋତ

୧୭୯୮ ମସିହାରେ ଇଂରେଜ୍ ସେନାପତି ନେଲ୍‌ସନ୍ ଫରାସୀ ସମ୍ରାଟ ନେପୋଲିଅନ୍ ବୋମପାର୍ଟଙ୍କର ଗୃରଗୋଟି ଜାହାଜ ନୀଳନଦୀରେ ବୁଡ଼ାଇ ଦେଇଥିଲେ । ଅଲେକ୍‌ଜାଣ୍ଡ୍ରିଆର ଅଦୂରରେ ସେ ଜାହାଜମାନ ଏବେ ଠାବ ହୋଇଛି । ମାଲ୍‌ପତ୍ର ଯେମିତି ଥିଲା ସେମିତି ଅଛି । ଉଦ୍ଧାର କାମ ଆରମ୍ଭ ହୋଇଛି ।

## ଜାଣନ୍ତି କି ?

୧. ସାହିତ୍ୟରେ ପ୍ରଥମ ନୋବେଲ୍-ପୁରସ୍କାର-ବିଜେତା କିଏ ?

୨. ଶାନ୍ତି ପାଇଁ ପ୍ରଥମ ନୋବେଲ୍-ପୁରସ୍କାର-ବିଜେତା କିଏ ?

୩. ଭୌତିକ ଶାସ୍ତ୍ରରେ କାହାକୁ ପ୍ରଥମେ ନୋବେଲ୍ ପୁରସ୍କାର ମିଳିଥିଲା ?

୪. ରସାୟନ ଶାସ୍ତ୍ରରେ କେଉଁ ବୈଜ୍ଞାନିକ ପ୍ରଥମେ ନୋବେଲ ପୁରସ୍କାର ପାଇଲେ ?

୫. ଚିକିତ୍ସା ଶାସ୍ତ୍ରରେ ପ୍ରଥମ ନୋବେଲ-ପୁରସ୍କାର-ବିଜେତା କିଏ ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# ଶାପ ମୁକ୍ତି

ହଜପୁର ଗାଁର ବସନ୍ତବାବୁଙ୍କ ପୁଅ ସୁଧୀର ଦେଖିବାକୁ ବହୁତ ସୁନ୍ଦର । ଅବଶ୍ୟ ସମସ୍ତେ ଯେ ତା' ଚେହେରା ଦେଖି ମୁଗ୍‌ଧ ହେବେ, ସେକଥା ନୁହେଁ । ତେବେ ସାଧାରଣତଃ ଲୋକେ ଢଇଲ୍ ଡାଉଲ୍ ଦେହ, ଗୋରା ତକତକ ରଙ୍ଗ ଦେଖିଲେ ତାକୁ ସୁନ୍ଦର ବୋଲି କହୁଥାନ୍ତି । ପ୍ରକୃତ ସୌନ୍ଦର୍ଯ୍ୟ ସହିତ ଯେ ରଙ୍ଗର ସମ୍ବନ୍ଧ ନାହିଁ, ଚେହେରା ଉପରେ ଅନ୍ତରର ମହତ୍ତ୍ୱ ଯେତିକି ମାତ୍ରାରେ ପ୍ରତିଫଳିତ ହେଉଥିବ, ସେତିକି ମାତ୍ରାରେହିଁ ଜଣେ ପ୍ରକୃତ ସୁନ୍ଦର, ସେକଥା ବା କେତେଜଣ ବୁଝନ୍ତି ?

ହଁ, ସୁଧୀରକୁ ଲୋକେ ସୁନ୍ଦର ବୋଲି କହୁଥାନ୍ତି । ଜ୍ଞାନ ହେଲା ଦିନରୁ ଏକଥା ଶୁଣି ଶୁଣି ମନେ ମନେ ସୁଧୀର ବଡ଼ ଗର୍ବ ଅନୁଭବ କରିବାକୁ ଲାଗିଲା ।

ସେ ଗାଁରେ ଜଣେ ଅନ୍ଧୁଣୀ ଥାଏ, ଆଉ ଜଣେ ଟୋକା ଥାଏ ଯାହାର ନାକଟା ଟିକିଏ ଅବାଗିଆ । ଆହୁରି ଜଣେ ଲୋକଥାଏ ଯାହାର ହାତ ଦୁଇଟି ଦେହ ତୁଳନାରେ ଅତ୍ୟନ୍ତ ସାନ । ଏମାନଙ୍କୁ ଛଡ଼ା ବୁଢ଼ା ଭିଖାରିଟିଏ ଥାଏ, ସିଏକ ଲେଙ୍ଗଡ଼ା ।

ସୁଧୀର ସେମାନଙ୍କୁ ଦେଖିଲେ ହସେ । କେବେ କେବେ ସେମାନଙ୍କ ଦୈହିକ ତ୍ରୁଟି ଉପରେ ଥଟ୍ଟାଳିଆ ଟିପ୍ପଣୀ ଦିଏ । ସେମାନେ ପ୍ରଥମେ ପ୍ରଥମେ ଏକଥା ବୁଝିପାରୁ ନଥିଲେ । ପରେ ବୁଝିଲେ । କିନ୍ତୁ ତଗଲ ସୁଧୀରକୁ ସେମାନେ ବା କ'ଣ କହିବେ ? ତା'ର ବା କ'ଣ କରିପାରିବେ ? ସୁଧୀର ସେମାନଙ୍କୁ ଚିଡ଼େଇ-ଦେଇ ଦୌଡ଼ ପଳାଏ । ସୁଧୀରର ଦେଖାଦେଖି ଅନ୍ୟ କେତେଜଣ ତା' ବୟସର ପିଲା ବି ସେମାନଙ୍କୁ ସେମିତି ଥଟ୍ଟା କରିବାର ଦେଖାଗଲା ।

" ଚସୁନ୍ଦର "



ଦିନେ ଖରାବେଳେ ସେ ତା'ର ଜଣେ ସାଙ୍ଗ ଘରକୁ ଯାଉଛି, ଗାଁର ନଗୁଣ୍ଠିଆ ଦୋଛକି ଉପରେ ଏକାଥରେ ଏ ସଭିଙ୍କ ସହ ଭେଟ ହୋଇଗଲା । ସୁଧୀରକୁ ଦେଖି ପକାଇବା ମାତ୍ରେ ଅବାଗିଆ ନାକବାଲା ଟୋକା କହିଲା, "ହଇରେ ବାଳକ, ଆମେ ତୋର କ'ଣ କ୍ଷତି କରିଥିଲୁଁ ଯେ ତୁ ଆମକୁ ଦେଖି ହସୁ, ଥଟ୍ଟା କରୁ ?"

ଛୋଟ ଛୋଟ ହାତବାଲା ଲୋକଟି କହିଲା, "ମୋ ହାତ ସିନା ଛୋଟ, କିନ୍ତୁ ବଳ ବେଶ୍ ଅଛି । ଦେଖିବୁ ?"

ଲେଙ୍ଗଡ଼ା ଭିଖାରି କହିଲା, "ଛାଡ଼, ଛାଡ଼, ଆମେ ତାକୁ କିଛି କହିବା ଦରକାର ନାହିଁ । ଆମେ ଯଦି ଅଭିଶାପ ଦେବା, ତେବେ ଆମ ସମସ୍ତଙ୍କ ଅବସ୍ଥା ଯାହା, ଏକଲା ସିଏ ସେସବୁ ଅବସ୍ଥା ଭୋଗିବ !"

ସୁଧୀର ଛକ ଉପରୁ ଦୌଡ଼ ଦୌଡ଼ ପଳାଇଗଲା । କିନ୍ତୁ ଲେଙ୍ଗଡ଼ା କଥାରେ ତା' ମନ ଭିତରେ ଶୋହାଏ ଭୀତି ପଶିଗଲା । ତା' ମା ତାକୁ କେତେଥର ଆଗରୁ କହିଥାନ୍ତି, "ବାପ, ବିକଳାଙ୍ଗମାନଙ୍କ ପ୍ରତି ଆମେ ସହାନୁଭୂତି ଦେଖାଇବା କଥା, ସେମାନଙ୍କୁ ସାହାଯ୍ୟ କରିବା କଥା । ତାହାହିଁ ମାନବିକତା । ସେମାନଙ୍କୁ ଥଟ୍ଟା କରିବା ଅଧର୍ମ ।" ସୁଧୀର ମା'ଙ୍କ କଥା ଉପରେ ଗୁରୁତ୍ୱ ଦେଇ ନଥିଲା । କିନ୍ତୁ ଆଜି କେମିତି ତା' ଛାତିରେ ଛନକା ପଶିଗଲା ।

ଏହାର କିଛିଦିନ ପରେ ସୁଧୀରର ବାପା ଗାଁ ଛାଡ଼ି ସହରରେ ଯାଇ ବସା ବାନ୍ଧିଲେ । ସୁଧୀର ବି ସେଠି ପଢ଼ାଶୁଣାରେ ମନ ଦେଇ ଗାଁ କଥା କ୍ରମେ ଭୁଲିଗଲା ।

ସୁଧୀର ଯେତେବେଳେ ପଢ଼ାପଢ଼ି ଶେଷ କରି ଭଲ ଚାକିରିଟିଏ ପାଇଲା, ସେତେବେଳକୁ ତା' ମା ଆଉ ନାହାନ୍ତି । ବାପା ତାକୁ ବିଭା କରାଇ ସାରି କିଛିଦିନ ପରେ ଇହଧାମରୁ ବିଦାୟ ନେଲେ । କିନ୍ତୁ ସୁଧୀର ଭାଗ୍ୟକୁ ଯିଏ ବୋହୂ ହୋଇ ଘରକୁ ଆସିଥାଏ, ସିଏ ଯେମିତି ବୁଦ୍ଧିମତୀ ସେହିପରି ସଂସାରର କାମଦାମରେ ନିପୁଣ । ସୁଧୀର ଆନନ୍ଦରେ ଦିନ କାଟୁଥାଏ ।

ସୁଧୀରର ସ୍ତ୍ରୀ ଗର୍ଭବତୀ ହେଲା । କିଛି-ଦିନ ପରେ ସେ ବାପ ଘରକୁ ଗଲା । ସୁଧୀର ନିଜ ଘରେ ଏକୁଟିଆ ଥାଏ । ରାତିରେ ସେ ଶୋଇଛି, ହଠାତ୍ ପିଲାବେଳେ ଗାଁ ଛକ ଉପରେ ଦିନେ ଯାହା ଘଟିଥିଲା, ସେକଥା ତା'ର ମନେ ପଡ଼ିଗଲା । ଛାତି ଭିତରେ ଗୁଡ଼ୁଁକିନା ଲାଗିଲା । ବାସ୍ତବିକ୍ ସେ ବିକଳାଙ୍ଗ-ମାନଙ୍କୁ ପରିହାସ କରି କେଡ଼େ ଭୁଲ୍ କରିଛି !



ଖବର ଆସିଲା—ତା'ର ପୁଅଟିଏ ହୋଇଛି । ସେ ଖୁସି ହୋଇ ଶଶୁର ଘରକୁ ଗଲା । ବହୁତ ଆଶା ନେଇ ପୁଅକୁ ଦେଖିବା ନିମନ୍ତେ ସ୍ତ୍ରୀ ଶୋଇଥିବା କୋଠରୀ ଭିତରେ ପଶିଲା । ମନେ ମନେ ଭାବୁଥାଏ, ପୁଅ କାହାପରି ହୋଇଥିବ ? ତା'ପରି ନା ତା' ସ୍ତ୍ରୀ ପରି ?

କିନ୍ତୁ ଭିତରକୁ ଯାଇ ଯାହା ଦେଖିଲା, ସେଥିରେ ତା' ମୁହଁ ଶୋତା ପଡ଼ିଗଲା । ପୁଅର ହାତ ଯୋଡ଼ିକ ଦେହ ତୁଳନାରେ ସରୁ ଓ ଛୋଟ । ଗୋଟିଏ ଗୋଡ଼ ଖଣ୍ଡିଆ । ନାକଟି ଟେଢ଼ା । ମନେ ହେଉଥିଲା ସେ ଅନ୍ଧ ମଧ୍ୟ ।

"ପୁଅ କେଡ଼େ ସୁନ୍ଦର ହୋଇଛି ଦେଖ !" ତା' ସ୍ତ୍ରୀ କହିଲା ।

ସୁଧୀର ପ୍ରଥମେ ଭାବିଲା ତା' ସ୍ତ୍ରୀ ଥଟ୍ଟା କରି ଏପରି କହୁଛି । କିନ୍ତୁ ଅଳ୍ପ ସମୟ ଭିତରେ ବୁଝିଲା, ସ୍ତ୍ରୀ ବାସ୍ତବିକ୍ ନିଜ ପୁଅକୁ ଅସାମାନ୍ୟ ସୁନ୍ଦର ବୋଲି ମନେ କରୁଛି । ସେ ଆଶ୍ଚର୍ଯ୍ୟ ହେଲା । ସବୁ ମା'ଙ୍କ ପାଇଁ ନିଜ ନିଜ ପୁଅମାନେ ସୁନ୍ଦର ବୋଲି ତା'ର ଧାରଣା ଦୃଢ଼ ହେଲା ।

ପୁଅ ଯେତିକି ଯେତିକି ବଡ଼ ହେଲା, ସୁଧୀର ସେତିକି ଅଧିକ ମାତ୍ରାରେ ଚିନ୍ତିତ ହେଲା । ତାକୁ ପଡ଼ିଶା ଘରର ପିଲାଙ୍କ ସହ ଖେଳିବାକୁ ଛାଡ଼ିଲା ନାହିଁ । କାଳେ ଅନ୍ୟ-ମାନେ ତାକୁ ଥଟ୍ଟା କରିବେ, ଏହା ଥିଲା ତା'ର ଡର ।

ଦିନେ ସହରକୁ ଜଣେ ସାଧୁ ଆସିଥାନ୍ତି । ଲୋକେ କହିଲେ, ତାଙ୍କର ବହୁତ ଆଲୌକିକ ଶକ୍ତି ଅଛି । ସୁଧୀର ଯାଇ ସାଧୁଙ୍କୁ ନିଜ

ଘରକୁ ନିମନ୍ତ୍ରଣ କରି ଆଣିଲା ଓ ପୁଅର ଅବସ୍ଥା ଦେଖାଇଲା । ସାଧୁ କିଛି ସମୟ ପୁଅକୁ ଲକ୍ଷ୍ୟ କରି ତା'ପରେ ଆଖି ବୁଜି ବସିଲେ । ଧ୍ୟାନରୁ ଉଠି କହିଲେ, "ବାବୁ ତମେ ତମ ଗାଁର ଯେଉଁ ଚାରିଜଣ ବିକଳାଙ୍ଗଙ୍କୁ ପିଲାବେଳେ ବାରମ୍ବାର ଅପମାନ କରିଛ, ସେମାନଙ୍କୁ କ୍ଷମା ମାଗିଲେ ତମ ପୁଅ ଭଲ ହୋଇଯିବାର ଆଶା ଅଛି । ନହେଲେ ନୁହେଁ ।"

ସୁଧୀର ପରଦିନ ସଙ୍ଗେ ସଙ୍ଗେ ଗାଁକୁ ଗଲା । କେବଳ ଲେଙ୍ଗଡ଼ା ବୁଢ଼ା ମରିଯାଇଥାଏ । ଅନ୍ୟ ତିନିଜଣ ଥାନ୍ତି । ସୁଧୀର ସେମାନଙ୍କୁ କ୍ଷମା ମାଗିଲା । ସେମାନେ କହିଲେ, "ବାବୁ! ତମେ ପିଲାବେଳେ କ'ଣ କହି ଦେଇଥିଲ ସେକଥା କ'ଣ ଆମେ ମନରେ ଧରି ବସିଛୁଁ ? ଆମେ ଏବେ କେଉଁ ମଣିଷ ଯେ ତମକୁ କ୍ଷମା ଦେବା କଥା ଉଠିବ ? ଯାଅ ବାବୁ, ଭଗବାନ ତମର ମଙ୍ଗଳ କରନ୍ତୁ ।"

ସୁଧୀର ଲେଙ୍ଗଡ଼ା ବୁଢ଼ାକୁ ଯେଉଁଠି କବର ଦିଆ ହୋଇଥିଲା ସେଠାକୁ ଯାଇ ଆଣ୍ଠୁ-ମାଡ଼ି ବସି କହିଲା, "ମୋତେ ମୋ ବ୍ୟବହାର ପାଇଁ କ୍ଷମା କର ।" ଏକଥା କହିବା ମାତ୍ରେ ତା' ମନରେ ଶାନ୍ତି ଫେରି ଆସିଲା ।

ସେହି ଶାନ୍ତ ଅବସ୍ଥା ଭିତରେ ସୁଧୀରର ନିଦ ଭାଙ୍ଗିଗଲା । ସେ ଉଠି ବସିଲା । ସେତେବେଳକୁ ଭୋର୍ ହୋଇ ଆସିଲାଣି । ଏହାର କିଛିଦିନ ପରେ ପୁଅ ଜନ୍ମ ହେବା ସମ୍ବାଦ ଆସି ତା' ପାଖରେ ପହଞ୍ଚିଲା । ସେ ପରଦିନ ଯାଇ ଶଶୁର ଘରେ ପହଞ୍ଚିଲା । ମନରେ ଗଭୀର ଉତ୍କଣ୍ଠା ଥାଏ । କିନ୍ତୁ ପହଞ୍ଚି ଦେଖିଲା, ପୁଅଟି ସୁନ୍ଦର ଓ ସୁକୁମାର ହୋଇଛି ।

"ସେ ବିକଳାଙ୍ଗମାନେ ବାସ୍ତବିକ ମୋତେ କ୍ଷମା କରିଛନ୍ତି ବୋଲି ପିଲାଟି ଏମିତି ସର୍ବାଙ୍ଗସୁନ୍ଦର ହୋଇଛି ।" ସୁଧୀର କହିଲା ।





[ ୧୨ ]

[ ପିଙ୍ଗଳର ଦୁଇ ଭାଇ ଜୀବଦତ୍ତ ଓ ଲକ୍ଷଦତ୍ତ କପ୍ତାନ୍ ସହ ଚକ୍ରାନ୍ତ କରି ପିଙ୍ଗଳକୁ ଗଡରେ କାବୁ କରି ଜାହାଜକୁ ପଠାଇ ଦେଲେ । ତା'ପରେ ପିଙ୍ଗଳ ସଂଗ୍ରହ କରିଥିବା ହୀରା ଓ ସୁନା ଇତ୍ୟାଦି ସମେତ ତା' ଯାଦୁ ଥଳିଟି ହସ୍ତଗତ କଲେ । ତା'ପରେ··· ]

ଜୀବଦତ୍ତ ଓ ଲକ୍ଷଦତ୍ତ ପିଙ୍ଗଳର ଥଳିଟିକୁ ଖୋଲି ଦେଖିଲେ, ସେଥିରେ ଅତ୍ୟନ୍ତ ମୂଲ୍ୟବାନ ହୀରା, ବୈଦୂର୍ଯ୍ୟ, ସୁନା ଓ ନାନା ପ୍ରକାର ମଣି ରହିଛି । ସେମାନେ ଜାଣିଥିଲେ ଯେ ପିଙ୍ଗଳ କିଛି ଧନ ନେଇ ଆସିଛି, କିନ୍ତୁ ସେ ଏତେ ବେଶି ଆଣିଛି ବୋଲି ସେମାନେ କଳ୍ପନା କରି ନଥିଲେ । ଆନନ୍ଦରେ ସେମାନେ କିଛି ସମୟ ପର୍ଯ୍ୟନ୍ତ ପ୍ରାୟ କଥା କହିପାରିଲେ ନାହିଁ । ଖାଲି ପରସ୍ପର ଆଡ଼େ ଅନାଇ ହସିଲେ । କ୍ରମେ ଦୁହେଁ ଅଟ୍ଟହାସ୍ୟ କଲେ । ଜୀବଦତ୍ତ ଲକ୍ଷଦତ୍ତର ଓ ଲକ୍ଷଦତ୍ତ ଜୀବଦତ୍ତର ପିଠି ଥାପୁଡ଼ାଇ ଦେଲା ।

କିଛି ସମୟ ପରେ ଲକ୍ଷଦତ୍ତ କହିଲା, "ଭାଇ, ଏହାର ମୂଲ୍ୟ ଯାହା, ସେଥିରେ ଆମେ



ଖାଲି ଏ ସହରରେ ନୁହେଁ, ସାରା ରାଜ୍ୟରେ ସବୁଠାରୁ ବଡ଼ ଧନୀ ହୋଇଯିବା । ରାଜା ଯଦି ଶୁଣିବେ ଆମେ ଏତେ ଧନୀ, ତେବେ ସେ ଆମକୁ ଜୁଆଇଁ କରିବେ । ମୁଁ ଭୁଲ କହୁଛି ?"

"ନାହିଁରେ ଲକ୍ଷ, ନାହିଁ । ତୁ ବିଲ୍‌କୁଲ୍ ଠିକ୍ କହୁଛୁ । ଆମକୁ ଛାଡ଼ ରାଜା ଆଉ କାହାକୁ ଜୁଆଇଁ କରିବେ ? ତେବେ ଆମକୁ ସାବଧାନରେ ଚଳିବାକୁ ହେବ । ଆମେ କପରି ଏତେ ଧନ ଲାଭ କଲୁଁ, ରାଜା କିମ୍ବା ଅନ୍ୟ କେହି ସେ ପ୍ରଶ୍ନ କଲେ ଆମେ ତା'ର ସନ୍ତୋଷଜନକ ଉତ୍ତର ଦେଇପାରିବା ଆବଶ୍ୟକ । ଚିନ୍ତା ନାହିଁ । ଆମର ବୁଦ୍ଧି କ'ଣ କମ୍ ଯେ ଆମେ କୈଫିୟତ୍ ଦେଇପାରିବା ନାହିଁ ?" ଜୀବଦତ୍ତ କହିଲା ।

"ବୁଦ୍ଧି କମ୍ ହୋଇଥିଲେ ଆମେ ଏତେ ଧନୀ ହୋଇ ପାରନ୍ତୁ କେମିତି ?" ଲକ୍ଷଦତ୍ତ କହିଲା ।

ମା ନୀରବରେ ସେମାନଙ୍କ କଥାବାର୍ତ୍ତା ସବୁ ଶୁଣୁଥିଲେ । ସେ ଦୁହିଁଙ୍କୁ କହିଲେ, "ଦେଖ, ଜୀବଦତ୍ତ, ଲକ୍ଷଦତ୍ତ, ମୋ ସୁନା ପୁଅମାନେ···"

"ଆମେ ତମ ପୁଅ ନୋହୁଁ ! ପିଙ୍ଗଳ ଏକା ତମ ପୁଅ !" ସେ ଦୁହେଁ କହିଲେ ।

"ହେଲା, ବାପାମାନେ, ସେଇଆ ହେଲା । କିନ୍ତୁ ମନେ ରଖ, ଏ ସମ୍ପତ୍ତି ପିଙ୍ଗଳ ବହୁବର୍ଷ କେତେ କଷ୍ଟ କରି ଉପାର୍ଜନ କରି ଆଣିଛି । ତମେମାନେ ଏହାକୁ ଆତ୍ମସାତ୍ କରୁଛ, ପାପ ହେବ ନାହିଁ ?" ମା ଅତି ଦୁଃଖ ଓ ବିରକ୍ତି ସହକାରେ କହିଲେ ।

"ଏହା ଆମର ପୈତୃକ ସମ୍ପତ୍ତି !" ଜୀବଦତ୍ତ ପାଟି କରି କହିଲା ।

"ଦେଖ, ଅନ୍ୟ କାହା ଆଗରେ ସେକଥା କହିଲେ ସିନା ଚଳିବ, ମୋ ଆଗରେ କହି ଲାଭ କ'ଣ ? ତମେମାନେ ଭୀଷଣ ଅପରାଧ କରୁଛ । ପିଙ୍ଗଳ ଏହା ହରାଇବ ବୋଲି ମୋର ଯେତେ ଦୁଃଖ ନୁହେଁ, ତମ ଦୁଇଜଣଙ୍କୁ ବିଧାତା କପରି ଶାସ୍ତି ଦେବ, ସେଇକଥା ଭାବି ମୁଁ କାତର ହେଉଛି ।"




"ତମ ଜାତରକୁ ପଗୃରେ କିଏ?" ଲକ୍ଷଦତ୍ତ କହିଲା ।

"ହଉ ହେଲା । ଯାଦୁ ଥାଳଟି ମୋତେ ଦେଇଦିଅ । ମୁଁ ଅଥର୍ବ ହେଲିଣି । କୁଆଡ଼େ ଯିବା ଆସିବା କରି ପାରିବି ନାହିଁ । ଥାଳ ମୋତେ ଖାଇବାକୁ ଦେବ । ତମେମାନେ ଯେତେବେଳେ ଇଚ୍ଛା ଆସି ଖାଇ ଯାଉଥିବ । କିନ୍ତୁ ଥାଳଟି ନେଇ ଯାଅନାହିଁ ।" ମା କହିଲେ ।

କିନ୍ତୁ ଦୁଇ ପୁଅ ସେତେବେଳକୁ ଆଉ ତାଙ୍କ କଥାରେ କାନ ଦେଉ ନଥିଲେ । ସେମାନେ ନିଜ ନିଜ ଭିତରେ ହୀରା ଓ ମଣିଗୁଡ଼ିକ ବାଣ୍ଟୁଥିଲେ ।

ବଣ୍ଟାବଣ୍ଟି ସୁରୁଖୁରୁରେ ହୋଇଗଲା । ତା'ପରେ ଜୀବଦତ୍ତ ଯାଦୁ ଥାଳଟି ଉଠାଇ ନେଇ କହିଲା, "ଏ ଗୋଟିକ ମୋ ପାଖରେ ଥିବ!"

ସଙ୍ଗେ ସଙ୍ଗେ ଲକ୍ଷଦତ୍ତର ମୁହଁ ଗମ୍ଭୀର ହୋଇଗଲା । ସେ କହିଲା, "ଭାଇ, ତମେ ଜାଣ ମୁଁ ଟିକିଏ ପେଟୁ । ଯେତେବେଳେ ସେତେବେଳେ ମୋର ନାନା ଚିଜ ଖାଇବାକୁ ମନ ହୁଏ । ଥାଳଟି ମୋ ପାଖରେ ଥାଉ ।"

"ମୁଁ ପୁଣି ଥରେ କହୁଛି । ଥାଳକୁ ନେଇ ବିବାଦ କର ନାହିଁ । ଥାଳ ମୋ ପାଖରେ ରହିଥାଉ । ଦୁହେଁ ସେଥିରୁ ମନଇଚ୍ଛା ଖାଇବ । ଆଉ ଏ ଦୁଃଖିନୀ ମା ମଧ୍ୟ ମୁଠାଏ ଖାଇବାକୁ ପାଇବ । ପିଙ୍ଗଳର ଧନସମ୍ପଦତକ ନେଇ ଯାଉଛ । ସିଏ ଏହାପରେ ଚଳିବ କିପରି? ଅନ୍ତତଃ ଯାଦୁ ଥାଳଟି ମୋ ପାଖରେ ଥିଲେ ସିଏ ବି ଖାଇବାକୁ ପାଇବ ।" ମା କହିଲେ ।

"ତମେ ଚୁପ୍ କର । ଆମେ ଆମ ଜିନିଷକୁ ନେଇ କ'ଣ କଲୁଁ ନକଲୁଁ, ସେ ବିଷୟରେ କହିବାକୁ ତମେ କିଏ?" ଦୁଇଭାଇ ଧମକ ଦେଇ କହିଲେ ।

ତା'ପରେ ଦୁଇଭାଇ ପରସ୍ପର ଅନାଇ ହସିଲେ । କିନ୍ତୁ ସେ ହସ ହେଲା କ୍ଷଣସ୍ଥାୟୀ । ଲକ୍ଷଦତ୍ତ ଥାଳଟି ଆୟତ୍ତ କରିବାକୁ ଚେଷ୍ଟା କରିବା ଦେଖି ଜୀବଦତ୍ତ ତାକୁ ଜାବୁଡ଼ି ଧରିଲା ।



"ଆରେ, ଆରେ, ଏତେ ବ୍ୟସ୍ତ ହେବାର କ'ଣ ଅଛି ? ଥଳି ମୋ ପାଖରେ ଥାଉ!" ଲକ୍ଷଦତ୍ତ ଗମ୍ଭୀର ଭାବରେ କହିଲା । ଜୀବଦତ୍ତର ମୁହଁରେ କ୍ରୂରତା ଫୁଟି ଉଠିଲା । ତେବେ ସେ ହସିବାର ଚେଷ୍ଟା କଲା ।

"ନା, ନା, ଥଳି ମୋ ପାଖରେ ରହିବ । ମୋ ପାଖରେ ରହିଲା କ'ଣ ତୋ ପାଖରେ ରହିଲା ଭଳି ହେବ ନାହିଁ ?" ଜୀବଦତ୍ତ ପଚାରିଲା ।

"ତେବେ ମୋ ପାଖରେ ରହିଲେ ତମ ପାଖରେ ରହିଲା ଭଳି ନହେବ କାହିଁ ?" ଏହା କହି ଲକ୍ଷଦତ୍ତ ତା' ଭାଇ ହାତରୁ ଥଳିଟି କାଢ଼ି ନେବାକୁ ଚେଷ୍ଟା କରିବାରୁ ଜୀବଦତ୍ତ ତାକୁ ଠେଲି ଦେଲା । ଲକ୍ଷଦତ୍ତ ତଳେ ପଡ଼ିଗଲା । ଉଠି ପଡ଼ି ସେ ଚିତ୍କାର କରି କହିଲା, "କ'ଣ ହେଲା, ମୋ ଆଗରେ ବଳ ଦେଖାଉଛ ?" ଏହା କହି ସେ ପୁଣି ଥଳି ଛଡ଼ାଇବାକୁ ଚେଷ୍ଟା କଲା । ଦୁଇ ଭାଇ ପେଲାପେଲି ହେଲେ । ଉଭୟେ ଉଭୟଙ୍କ ପ୍ରତି କଟୁ ଭାଷା ପ୍ରୟୋଗ କରୁଥାନ୍ତି ।

"ପୁଅମାନେ! ଏ ସମସ୍ୟାର ସମାଧାନ ମୁଁ କରିଦେଉଛି । ଥଳିଟି ମୋ ପାଖରେ ଥାଉ । ତମ ଭିତରୁ ଯିଏ ଯେତେବେଳେ ଚାହିଁବ, ତା' ପାଇଁ ମୁଁ ଏହା ଦ୍ୱାରା ଖାଦ୍ୟ ଆଣିଦେବି । ମୋ ପାଖରେ ରହିଲେ ପିଙ୍ଗଳ ବି ଖିଆପିଆ କରି ପାରିବ । ସେ ବଡ଼ତ ତମର ହିତ ଛଡ଼ା ଅହିତ କରି ନାହିଁ । ତମେମାନେ ତା' ଧନଦୌଲତ ସବୁ ନେଇ ଯାଉଛ । ଥଳିଟି ରଖିଦେଇ ଯାଅ ।" ମା କହିଲେ ।

କିନ୍ତୁ ତାଙ୍କ କଥା ବା ଶୁଣୁଛି କିଏ ?

କିନ୍ତୁ ତିନିଜଣଙ୍କ କଥା ଝରକା ସେପଟେ ଥାଇ ଶୁଣୁଥିଲା ରାଜାଙ୍କ କଟୁଆଳ । ସେ ବୁଝିଲା, କିଛି ଅଜବ ଚିଜକୁ ନେଇ ଏମାନେ ଝଗଡ଼ା କରୁଛନ୍ତି । ସେ ସଙ୍ଗେ ସଙ୍ଗେ ଅଳ୍ପ ଦୂରରେ ଥିବା ତିନିଜଣ ପ୍ରହରୀଙ୍କୁ ଡାକି ଆଣି ଦୁଇ ଯୁବକଙ୍କୁ ଧରିନେଲା ଓ ବାନ୍ଧି ପକାଇଲା ।

ହଠାତ୍ ସେଭଳି ଘଟଣା ଘଟିବ ବୋଲି ଦୁଇଭାଇ କଳ୍ପନା କରି ନଥିଲେ । ସେମାନେ

କିଛି ସମୟ ପାଇଁ ଘଟଣା କ'ଣ ହେଲା ବୁଝି ମଧ୍ୟ ପାରିଲେ ନାହିଁ ।

"ଇଏ କ'ଣ ?" ସେମାନେ କଟୁଆଳକୁ ପଚାରିଲେ ।

"ଚାଲ ରାଜାଙ୍କ ପାଖକୁ ।" ସେ କହିଲା ।

ଜୀବଦତ୍ତ ଓ ଲକ୍ଷଦତ୍ତ କାବା ହୋଇଗଲେ । ସେମାନେ ଯେତେ ନେହୁରା ହେଲେ ବି କଟୁଆଳ ଛାଡ଼ିଲା ନାହିଁ । ଧନଦୌଲତ ଓ ଯାହୁ ଥଳି ସମେତ ସେମାନଙ୍କୁ ଟଣାଓଟରା କରି କଟୁଆଳ ଓ ପ୍ରହରୀମାନେ ରାଜାଙ୍କ ଉଆସକୁ ନେଇଗଲେ ।



ରାଜା ସେତେବେଳେ ବିଛଣାରୁ ଉଠି ବସିଥାନ୍ତି । ବହୁତ ଧନଦୌଲତ ସମେତ ଅଜବ ଥଳିଟିଏ ଜବତ୍ ହୋଇଛି ଶୁଣି ସେ ଅପରାଧୀମାନଙ୍କୁ ନିଜ କୋଠରୀକୁ ଡକାଇଲେ ଓ ପଚାରିଲେ, "ଏଗୁଡ଼ା କେଉଁଠାରୁ ପାଇଲ ?"

"ଆଜ୍ଞା, ଉପାର୍ଜନ କରିଛୁଁ !" ଜୀବଦତ୍ତ କହିଲା ।

"ଉପାର୍ଜନ ?" ରାଜା ଥରେ ସେମାନଙ୍କ ଚେହେରା ଆଡ଼କୁ ଓ ଆଉ ଥରେ ଧନଦୌଲତ ଆଡ଼କୁ ଅନାଇ ଜଣେ ପ୍ରହରୀକୁ କହିଲେ, "ଲଗା ଚାବୁକ୍ । ଯେ ପର୍ଯ୍ୟନ୍ତ ସତ ନ ବାହାରୁଛି, ସେ ପର୍ଯ୍ୟନ୍ତ ଲଗାଉଥା ।"

ପ୍ରହରୀ ହାତରେ ଭୀଷଣ ଚାବୁକ ଦେଖି ଦୁହିଙ୍କ ହାଲ୍କ ଶୁଖିଗଲା । ତଥାପି ଦୁହେଁ ନୀରବ ରହିଲେ । ତେବେ ପାଞ୍ଚଥର ଚାବୁକ ପଡ଼ିବା ପରେ ଜୀବଦତ୍ତହିଁ ପାଟିକରି କହିଲା, "ସବୁର୍ ହଜୁର୍, ସବୁର ! ଏଥର କହି ଦେଉଛି ।"

ଦୁହେଁ ଆମୂଳଚୂଳ ସବୁ କହିଗଲେ । ରାଜା ରାୟ ଦେଲେ, "ଆମ ରାଜ୍ୟରୁ ଯିଏ ଗୁଲାମ ହୋଇ ଚାଲିଯାଏ, ତା'ର ନାଗରିକ ଅଧିକାର ରହେ ନାହିଁ । ଯାହାର ନାଗରିକ ଅଧିକାର ନାହିଁ, ତା'ର ସମ୍ପତ୍ତି ବା ରହିବ କିପରି ? ତେଣୁ ପିଙ୍ଗଳର ସବୁ ସମ୍ପତ୍ତି ଆମ୍ଭେ ଦରବାର ନେଇଗଲୁଁ । ବର୍ତ୍ତମାନ ରହିଲା ତମ ଅପରାଧ କଥା । ତମେ ଅନ୍ୟ ସହ ପ୍ରତାରଣା କରିଛ । ମୋ ଆଗରେ ମିଛ

କହୁଛ । ତମ ମା' ବୁଢ଼ୀକୁ ଦୁଃଖ ଦେଇଛ । ପୁଣି ସାନଭାଇର ସମ୍ପତ୍ତି ମାରି ନେଇଛ । ତଥାପି ମୁଁ ତମ ପ୍ରତି ବିଶେଷ କଠୋର ଦଣ୍ଡ ବିଧାନ କରୁନାହିଁ । ଯାଅ, କୋଡ଼ିଏ ବର୍ଷ କାରାଗାରରେ ରୁହ । ତମ ମା'ର ଭରଣ-ପୋଷଣ ଦରବାର ତରଫରୁ ସବୁ କରାହେବ ।"

ଦୁଇଭାଇ ହାଉ ହାଉ ହୋଇ କାନ୍ଦିଲେ ।

"କାନ୍ଦ ହେଉଛ ? ହାଃ ହାଃ । ତମ ସାନଭାଇ ପିଙ୍ଗଳ ବର୍ତ୍ତମାନ ଜାହାଜରେ କେମିତି କାନ୍ଦୁଥିବ ସେକଥା ବୁଝି ପାରୁଛ ? ଆରେ, ଲଗା ଚାବୁକ୍ ! ଯେଯାଏ କାନ୍ଦ ବନ୍ଦ ନ ହୋଇଛି, ଲଗାଉଁଥା ।" ରାଜା ହୁକୁମ୍ ଦେଲେ ।

ପୁଣି ଚାବୁକ୍ ପଡ଼ିଲା । ଦୁଇଭାଇ ବାଧ୍ୟ ହୋଇ ରଡ଼ି ବନ୍ଦ କଲେ ।

"ହଜୁର, ସମ୍ପତ୍ତି ତକ ନିଅନ୍ତୁ । ଆମକୁ ଛାଡ଼ି ଦିଅନ୍ତୁ । ଆମେ ଅନ୍ୟ ରାଜ୍ୟକୁ ଚାଲିଯିବୁଁ ।"

"କୋଡ଼ିଏ ବର୍ଷ ପରେ!" ରାଜା କହି ଉଠି ପଡ଼ିଲେ । ପ୍ରହରୀ ଦୁଇଜଣଙ୍କୁ ଜଂଜିରରେ ବାନ୍ଧି ଟାଣି ନେଇ କାରାଗାର ଭିତରକୁ ଠେଲି ଦେଲା ।

"ଆମେ ବଡ଼ ଭୁଲ କଲୁଁ ।" ଜୀବଦତ୍ତ କହିଲା ।

"ହଁ । ଅପରାଧ କଲୁଁ । ମା କଥା ମାନି ଥିଲଟା ତା' ଜମା ଦେଇ ଦେଇଥିଲେ କଥା ଛୁଟିଥାନ୍ତା!" ଲକ୍ଷଦତ୍ତ କହିଲା ।

"ବର୍ତ୍ତମାନ ଉପାୟ?" ଦୁହେଁ ଦୁହିଁଙ୍କୁ ପଚାରିଲେ । କିନ୍ତୁ କେହି ଉତ୍ତର ଦେଇ ପାରିଲେ ନାହିଁ ।

* * *

ତେଣେ ପିଙ୍ଗଳକୁ ନେଇ ଜାହାଜରେ ଅନ୍ୟ ଗୁଲାମମାନଙ୍କ ସହ ବନ୍ଦୀ କରି ରଖାଗଲା । ଅସଲରେ ସେ କପ୍ତାନ ଗୋଟିଏ ସମୁଦ୍ର-ଦସ୍ୟୁ । ତା' ନାବିକମାନେ ସମସ୍ତେ ଡାକୁ । ଗୁଲାମମାନଙ୍କୁ ସିଏ ଡାକୁ ହେବାରେ ତାଲିମ୍ ଦିଏ ।

ପିଙ୍ଗଳ ଯେତେ ଚେଷ୍ଟା କଲେ ମଧ୍ୟ ଭଲ୍ଲୁକକେତୁକୁ ଡାକିବାର ମନ୍ତ୍ରଟି ମନେପକାଇ ପାରିଲା ନାହିଁ । ଜାହାଜର ଅନ୍ଧକାର କୋଠରୀ ଭିତରେ ପଡ଼ି ରହି ସେ କିପରି ମୁକ୍ତି ପାଇବ ସେକଥା ଭାବୁଥାଏ । ଲୋକମାନେ ତାକୁ ବନ୍ଦୀ କରିଦେବା ପରେ ମା ସହିତ କେଡ଼େ ଦୁର୍ବ୍ୟବହାର କରୁଥିବେ, ସେକଥା ଭାବି ସେ ବହୁତ ମନକଷ୍ଟ କରୁଥାଏ ।

ଦିନେ ଭୀଷଣ ଝଡ଼ ହେଲା । ସମୁଦ୍ରର ଢେଉମାନେ ଗଛ ଉଚ୍ଚକୁ ଉଠି ଜାହାଜ ଉପରେ ଓଜାଡ ହୋଇ ପଡ଼ିବାକୁ ଲାଗିଲେ । ଗୁଲାମ-ମାନଙ୍କ ଅଣ୍ଟାରେ ଦୌଡ଼ ବନ୍ଧାଥିବା ଅବସ୍ଥାରେ ସେମାନଙ୍କୁ ଲଗାଇ ଜଳ ବାହାର କରିବାରେ ଲଗାଇ ଦିଆ ହେଲା ।

କପ୍ତାନ ତା'ର ଦୂରବୀକ୍ଷଣ ଯନ୍ତ୍ରରେ ଦେଖିଲା, ଅଳ୍ପ ଦୂରରେ ଆଉ ଗୋଟିଏ ଜାହାଜ ବି ଝଡ଼ରେ ଅଟକୁଛି । ତାହା ଗୋଟିଏ ବଡ଼ ବାଣିଜ୍ୟ ପୋତ ବୋଲି ତା'ର ଧାରଣା



ହେଲା । ବାଣିଜ୍ୟ ପୋତରେ ଅନେକ ଧନ ସମ୍ପତ୍ତି ଥାଏ । ସେହି ଅବସ୍ଥାରେ ବି ଡାକୁ ସର୍ଦ୍ଦାର କପ୍ତାନ ସେ ଜାହାଜ ଆକ୍ରମଣ କରି ଲୁଣ୍ଠନ କରିବାକୁ ସ୍ଥିର କଲା ।

"ଆମ ଜାହାଜକୁ ସେ ଜାହାଜ ପାଖକୁ ନିଅ ।" ସେ ତା' ନାବିକମାନଙ୍କୁ ହୁକୁମ ଦେଲା ।

ଜାହାଜକୁ ସେ ଜାହାଜ ଆଡେ ନେବା ସହଜ ନଥିଲା । କାରଣ ଭୀଷଣ ଢେଉ ଓ ପବନରେ ଡାକୁ ଜାହାଜ ଏପଟ ସେପଟ ହୋଇ ଯାଉଥାଏ ।

କପ୍ତାନ ପାଟିକରି ନାବିକମାନଙ୍କୁ ଉତ୍ସାହ ଦେଉଥାଏ ଓ କପରି ଭାବରେ ଜାହାଜକୁ ଆଉ ଜାହାଜ ପାଖକୁ ନେବାକୁ ହେବ, ସେ ନିର୍ଦ୍ଦେଶ ଦେଉଥାଏ । ମଧ୍ୟେ ମଧ୍ୟେ ଦୂରବୀକ୍ଷଣ ସାହାଯ୍ୟରେ ସେ ଜାହାଜକୁ ଦେଖୁଥାଏ ।

ଏହିପରି ଭାବରେ କିଛି ସମୟ ବିତିବା ପରେ ଦୁଇ ଜାହାଜ ପାଖାପାଖି ହୋଇ ଆସିଲେ । କପ୍ତାନ ପୁଣି ଥରେ ଦୂରବୀକ୍ଷଣ ଉଠାଇ ସେ ଜାହାଜକୁ ନିରୀକ୍ଷଣ କଲା ।

ତା' ମୁହଁ ହଠାତ୍ ଶେତା ପଡିଗଲା । ସେ ପାଟିକରି କହିଲା, "ଛାଡ, ଛାଡ, ସେ ଜାହାଜ ବାଣିଜ୍ୟ ପୋତ ନୁହେଁ । ତା' ପାଖକୁ ଯିବା ନିରାପଦ ନୁହେଁ । ଜାହାଜ ଅନ୍ୟ ଦିଗକୁ ନେଇ ଚାଲ ।"

କପ୍ତାନ ଏତିକି କହି ସାରିଛି କି ନାହିଁ, ଅନ୍ୟ ଜାହାଜରୁ ନିଆଁ ହୁଳା ଯୋଖା ହୋଇଥିବା ତୀରମାନ ଆସି ତା' ଜାହାଜ ଉପରେ ପଡ଼ିଲା । ଦୁଇଜଣ ନାବିକଙ୍କ ଲୁଗାପଟାରେ ନିଆଁ ଲାଗିଗଲା ମଧ୍ୟ ।

"ତୀର ମାର, ତୀର ମାର !" କପ୍ତାନ ଆଦେଶ ଦେଲା । ତା'ପରେ ସେ ପୁଣି କହିଲା, "ସବୁ ଗୁଲାମଙ୍କୁ ମୁକ୍ତ କରିଦିଅ । ସେମାନଙ୍କୁ ବି ଜାହାଜ ରକ୍ଷା କରିବା କାମରେ ଲଗାଅ !"

(କ୍ରମଶଃ)






# ଅଭିଯୁକ୍ତ ରାଜା

ନିଶା ଗରଜୁ ଥାଏ । ଭୂହାଲୁ ଭୂହା ବର୍ଷା ହେଉଥାଏ । ଘଡ଼ଘଡ଼ ଓ ଶ୍ୱାନ ଶ୍ୱାପଦଙ୍କ ରଡ଼ ସାଙ୍ଗକୁ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ, ତା'ପରେ ତାକୁ କାନ୍ଧରେ ପକାଇ ଶୂନ୍‌ଶାନ୍‌ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତୁମେ ନିଶାର୍ଦ୍ଧରେ ଯେଭଳି ପରିଶ୍ରମ କରୁଛ, ତାହା କମ୍ କଥା ନୁହେଁ । କୌଣସି ସାଫଲ୍ୟ ଲଭ ତୁମର ଉଦ୍ଦେଶ୍ୟ

ବେତାଳ କଥା



ନିଷ୍ଫଳ । କିନ୍ତୁ ସାଫଲ୍ୟ ଲାଭ କରି ମଧ୍ୟ ତାହା ଭୋଗ ନକରିବା ଲୋକଙ୍କର ଦୃଷ୍ଟାନ୍ତ ମଧ୍ୟ ରହିଛି । ତମକୁ ଗୋଟାଏ ଘଟଣା କହୁଛି, ଶୁଣ । ଶୁଣିଲେ ଶ୍ରମଭାର ଲାଘବ ମନେ ହେବ ।"

ବେତାଳ କହିଲା : ଉଜ୍ଜ୍ୱଳ ଦେଶର ଗିରିନଗରରେ ବାସ କରୁଥିଲେ ଦୁଇ ଭଉଣୀ —ଊର୍ମିଳା ଓ ବାସନ୍ତୀ । ସେମାନେ ଶିଶୁ ଥିବା ଅବସ୍ଥାରେ ସେମାନଙ୍କ ବାପା ମା ମରି ଯାଇଥିଲେ । ଜେଜେମା ସେମାନଙ୍କୁ ପାଳପୋଷି ବଡ଼ କରିଥିଲା । ସିଏ ବି ଆଉ ଇହଧାମରେ ନଥିଲା ।

ଗିରିନଗରର ଲୋକେ ଦୁଇ ଭଉଣୀଙ୍କୁ ବଡ଼ ଶ୍ରଦ୍ଧା କରୁଥିଲେ । ଦୁହେଁ ଥିଲେ ଦେଖିବାକୁ ସୁନ୍ଦର । ଊର୍ମିଳା ସୁଗାୟିକା ଥିଲା; ବାସନ୍ତୀ ଥିଲା ବିଦୁଷୀ ।

ବର୍ଷେ ଉଜ୍ଜ୍ୱଳ ଦେଶରେ ମରୁଡ଼ି ପଡ଼ିଲା । ଲୋକେ ବଡ଼ କଷ୍ଟରେ ଥାନ୍ତି । ସେତିକବେଳେ ପଡ଼ୋଶୀ ମଗଧ ଦେଶର ରାଜା ଉଜ୍ଜ୍ୱଳ ଦେଶ ଆକ୍ରମଣ କଲେ । ଉଜ୍ଜ୍ୱଳ ଦେଶର ରାଜା ବିଜୟେନ୍ଦ୍ର ପରାସ୍ତ ହେଲେ ଓ ବନ୍ଦୀ ହେଲେ ।

ମଗଧର ରାଜା କୀର୍ତ୍ତିସେନ ସିନା ରାଜ୍ୟ ଜୟକରି ଖୁସି ହେଲେ, କିନ୍ତୁ ଉଜ୍ଜ୍ୱଳ ଦେଶର ଅବସ୍ଥା ଦେଖି ତାଙ୍କର ସେ ଆନନ୍ଦ ଦୀର୍ଘସ୍ଥାୟୀ ହେଲା ନାହିଁ । ବିଜୟେନ୍ଦ୍ର ମରୁଡ଼ିର ପ୍ରତିକାର କରିବା ଦିଗରେ ଯେଉଁ-ସବୁ କାର୍ଯ୍ୟ ଆରମ୍ଭ କରିଥିଲେ, ସେ ମଧ୍ୟ ସେହିସବୁ କାର୍ଯ୍ୟ ଚାଲୁ ରଖିଲେ ।

ଦିନେ କୀର୍ତ୍ତିସେନ ତାଙ୍କ ଦେହରକ୍ଷୀ-ମାନଙ୍କ ସହ ଗିରିନଗର ଦେଇ ଯାଉଥାନ୍ତି, ହଠାତ୍ ତାଙ୍କ ଆଖି ପଡ଼ିଲା ବାସନ୍ତୀ ଉପରେ । ବାସନ୍ତୀର ସୌନ୍ଦର୍ଯ୍ୟ ଦେଖି ସେ ମୁଗ୍ଧ ହେଲେ ଓ ଭାବିଲେ ତାକୁ ବିଭାହେଲେ ମନ୍ଦ ହେବ ନାହିଁ ! ତେବେ ସେତେବେଳେ ସେ ବ୍ୟସ୍ତ ଥାନ୍ତି । ନିଜ ବାଟରେ ଚାଲିଗଲେ ।

ପରଦିନ ସେ ପୁଣି ଗିରିନଗର ବାଟ ଦେଇ ନିଜ ରାଜଧାନୀକୁ ଫେରିଗଲେ ।



ଆଶ୍ଚର୍ଯ୍ୟର କଥା, ରାଜା ଗିରିନଗର ଅତିକ୍ରମ କରିଯିବା ସଙ୍ଗେସଙ୍ଗେ ଊର୍ମିଳା କୁଆଡ଼େ ଉଭାନ ହୋଇଯିବାର ଜଣା ପଡ଼ିଲା । ଊର୍ମିଳା ନଦୀକୁ ସ୍ନାନ ପାଇଁ ଓ ପାଣି ଆଣିବା ପାଇଁ ଯାଇଥିଲା । ସେତିକବେଳେ ରାଜା ଘୋଡ଼ାଚଢ଼ି ନଈ ପାରି ହୋଇ ଯାଇଥିବା କଥା ଲୋକେ ଜାଣିଥିଲେ । ନଈରେ ବେଶୀ ପାଣି ନଥିଲା । କେହି ବୁଡ଼ିଯାଇ ନପାରେ ।

ସଞ୍ଜସୁଦ୍ଧା ଅପେକ୍ଷା କରି ବାସନ୍ତୀ କାନ୍ଦିବାକୁ ଲାଗିଲା । ଦୁଇଜଣ ଗ୍ରାମବାସୀଙ୍କୁ ସାଙ୍ଗରେ ଧରି ସେ ମଗଧ ଦେଶର ରାଜଧାନୀ ଅଭିମୁଖେ ବାହାରିଲା । ରାଜଧାନୀ ବିଶେଷ ଦୂର ନୁହେଁ । ମଝି ରାତିରେ ସେମାନେ ସୀମାନ୍ତବର୍ତ୍ତୀ ଗୋଟିଏ ଚଟିଘରେ ପହଞ୍ଚି ବିଶ୍ରାମ କଲେ । ପୁଣି ଭୋର ଯାତ୍ରାରମ୍ଭ କଲେ ।

ସେତିକବେଳେ ଦରବାର ଆରମ୍ଭ ହୋଇଥାଏ । ବାସନ୍ତୀ ଯାଇ ସିଧା ଦରବାର ଭିତରେ ଠିଆହୋଇ କହିଲା, "ମହାରାଜ ! ମୁଁ ଗିରିନଗରୀରୁ ଆସୁଛି । ଗତ କାଲି ଦୁଇପହରଠୁଁ ମୋ ଭଉଣୀ ଊର୍ମିଳାର ପତ୍ତା ମିଳୁନାହିଁ ।"

ରାଜା ତ ପୂର୍ବରୁ ବାସନ୍ତୀକୁ ଦେଖିଥିଲେ । ଆଶ୍ଚର୍ଯ୍ୟ ଓ ଆମୋଦିତ ହୋଇ ସେ ପଚାରିଲେ, "ଆମେ ନିଶ୍ଚୟ ତୁମ ଭଉଣୀଙ୍କୁ ଖୋଜି ବାହାର କରିବା । କ'ଣ ହୋଇଥାଇ ପାରେ ବୋଲି ଭାବୁଛ ?"

"ସେ ହରଣଗୃହ ହୋଇଯାଇଛି ।" ବାସନ୍ତୀ ଉତ୍ତର ଦେଲା ।

"କାହା ଉପରେ ତୁମର ସନ୍ଦେହ ?"

"ଜଣେ ନାରୀକୁ ଅସହାୟ ଅବସ୍ଥାରେ ପାଇ ଯିଏ ହରଣଗୃହ କରିପାରେ, ତାହାରି ଉପରେ ମୋର ସନ୍ଦେହ ।"

"ତୁମ କଥା ପ୍ରହେଳିକା ପରି ଶୁଭୁଛି । ସ୍ପଷ୍ଟ କରି କହିପାରିବ ନାହିଁ ?"

"ନିଶ୍ଚୟ କହିବି । ସବୁ ପ୍ରକାର ପରିଣାମ ପାଇଁ ମୁଁ ପ୍ରସ୍ତୁତ ହୋଇ ଆସିଛି । ଦଣ୍ଡ ପ୍ରତି ମୋର ଭୟ ନାହିଁ । ସତ କଥା କହିଲେ, ଆପଣଙ୍କ ଉପରେହିଁ ମୋର ସନ୍ଦେହ !" ବାସନ୍ତୀ ଜବାବ୍ ଦେଲା ।

"ମୋ ଉପରେ ସନ୍ଦେହ ? କାରଣ ?" କ୍ରୁଦ୍ଧ କଣ୍ଠରେ ରାଜା ପଚାରିଲେ ।

"ଆପଣ କ୍ରୁଦ୍ଧ ହେବେ ବୋଲି ମୁଁ ଜାଣିଥିଲି । ମୋ ଭଉଣୀ ଏକାକୀ ନଦୀ

କୂଳରେ ଥିବା ବେଳେ ଆପଣ ନଦୀ ଉପର ଦେଇ ଘୋଡ଼ା ଝପଟାଇ ଯାଇଛନ୍ତି । ପରେ ପରେ ଭଉଣୀର ଦେଖା ନାହିଁ । ଗିରି ନଗରରେ କୌଣସି ମହିଳା ଅପହରଣ କଲ ଭଳି ଲୋକ ଥିବାର କେବେ ଜଣା ନାହିଁ । ତେବେ ଏହାହିଁ ମୋ ସନ୍ଦେହର ହେତୁ ନୁହେଁ । ଯେଉଁ ରାଜା ଗୋଟିଏ ପଡ଼ୋଶୀ ରାଜ୍ୟ ସଙ୍କଟଜନକ ଅବସ୍ଥାରେ ଥିବା ବେଳେ ସେ ରାଜ୍ୟକୁ ଅପହରଣ କରି ନେଇ ପାରେ, ସେ ରାଜା ଜଣେ ଯୁବତୀ ଅସହାୟ ଅବସ୍ଥାରେ ଥିବା ବେଳେ ତାକୁ ଅପହରଣ କରିନେବା ସ୍ୱାଭାବିକ ।" ବାସନ୍ତୀ କହିଲା ।

ରାଜା ଗମ୍ଭୀର ହୋଇ ରହିଲେ । ତାଙ୍କ ନୀରବତା ଦେଖି ବାସନ୍ତୀର ମୁହଁରେ ସ୍ମିତ ହାସ୍ୟ ଫୁଟି ଉଠିଲା । ଅର୍ଥାତ୍ ସେ ବୁଝିଲା ଯେ ଅଭିଯୋଗ ଅସ୍ୱୀକାର କରିବାର ଉପାୟ ରାଜାଙ୍କର ନାହିଁ ! "କ'ଣ, ମୋ ଭଉଣୀକୁ ଫେରି ପାଇ ପାରେ ?" ବାସନ୍ତୀ ପଚାରିଲା ।

ରାଜାଙ୍କ ଚମକ ଭାଙ୍ଗିଲା । ସେ କହିଲେ, "ସେହି ଚେଷ୍ଟା କରିବି । ତୁମେ ଇଚ୍ଛା କଲେ ମୋ ଅତିଥି ଶାଳାରେ ଅପେକ୍ଷା କରିପାର, ନଚେତ୍ ଘରକୁ ଯାଇପାର । ମୋ ଚେଷ୍ଟାର ଫଳ ଯାହା ହେଉନା କାହିଁକି, ଦୁଇ ଦିନ ଭିତରେ ଖବର ପାଇବ ।"

ବାସନ୍ତୀ ତା'ର ଦୁଇ ସହଯାତ୍ରୀଙ୍କ ସହ ଗିରିନଗରକୁ ଫେରିଲା । ସନ୍ଧ୍ୟା ସୁଦ୍ଧା ଘରେ ପହଞ୍ଚି ଦେଖେତ ପ୍ରିୟ ମରାଳ ଅଭିମୁଖେ ଯିବାର କେଇ ଘଣ୍ଟା ପରେହିଁ ଊର୍ମିଳା ଘରକୁ ଫେରି ଆସିଥିଲା । କଥା କ'ଣ କି, ଊର୍ମିଳା ଜଣେ ସଙ୍ଗୀତଜ୍ଞ ଯୁବକକୁ ବିଭା ହେବାକୁ ସ୍ଥିର କରିଥିଲା । ଏଣେ ଗିରିନଗରର ଜଣେ ପ୍ରଭାବଶାଳୀ ଲୋକ ଊର୍ମିଳାକୁ ବିଭା ହେବାକୁ



ବିଚାର କରୁଥିଲେ । କାଳେ ତା' ନିଜ ମନୋମତ ଯୁବକ ସହ ବିବାହରେ ସେ ପ୍ରଭାବଶାଳୀ ଲୋକ ବିଘ୍ନ ଘଟାଇବେ, ସେହି ଆଶଙ୍କାରେ ଦୁହେଁ ଗୋଟିଏ ମନ୍ଦିରକୁ ଯାଇ ବିଭା ହୋଇ ପଡ଼ିଥିଲେ । ବାସନ୍ତୀକୁ ବି ପୂର୍ବରୁ ଏକଥା କହିବାକୁ ସେ ସାହସ ପାଇ ନଥିଲା ।

ରାଜାଙ୍କ ପ୍ରତି କଠୋର ବ୍ୟବହାର କରିଥିବା ହେତୁ ବାସନ୍ତୀ ସନ୍ତପ୍ତ ହେଲା । ରାତି ପାହିବା ପୂର୍ବରୁ ସେ ପୁଣି ମହାଳ ଅଭିମୁଖେ ଚାଲିଲା । ଦୁଇ ପହର ବେଳେ ଦରବାରରେ ପହଞ୍ଚି ରାଜାଙ୍କୁ ସବୁ କହି ନିଜ ଆଚରଣ ଯୋଗୁଁ କ୍ଷମାପ୍ରାର୍ଥନା କଲା ।

ରାଜା ହସିଲେ ଓ କହିଲେ, "ତମ ପ୍ରତି ମୁଁ କୃତଜ୍ଞ ।" ଏହା କହି କିଛି ଉପହାର ଓ ଦେହରକ୍ଷୀ ଦେଇ ବାସନ୍ତୀକୁ ବିଦାୟ କରିଦେଲେ । ପରଦିନ ସେ ଉଜ୍ଜ୍ୱଳ ଦେଶର ରାଜଧାନୀକୁ ଯାଇ ବନ୍ଦୀ ବିଜୟେନ୍ଦ୍ରଙ୍କୁ ମୁକ୍ତ ଦେଲେ ଓ ତାଙ୍କ ରାଜ୍ୟ ତାଙ୍କୁ ଫେରାଇ ଦେଲେ ।

ଟିକିଏ ଚୁପ୍ ରହି ରାଜା ବିକ୍ରମାର୍କଙ୍କୁ ବେତାଳ ପ୍ରଶ୍ନ କଲା, "ରାଜା ! ମୋର କେତେଗୁଡ଼ିଏ ସନ୍ଦେହ ଅଛି । ସେଦିନ ବାସନ୍ତୀ ସଭା ମଝିରେ ରାଜା କୀର୍ତ୍ତିସେନଙ୍କୁ ଅପମାନସୂଚକ କଥା କହିଲା, ଅଥଚ ରାଜାଙ୍କ ପ୍ରତିକ୍ରିୟା ଏତେ ନରମ ହେଲା କପରି ? ପୁଣି ରାଜା ପୂର୍ବରୁ ବାସନ୍ତୀକୁ ବିଭା ହେବେ ବୋଲି ଭାବିଥିଲେ । ଯେତେବେଳେ ବାସନ୍ତୀ ରାଜାଙ୍କୁ ନିର୍ଦ୍ଦୋଷ ବୋଲି ଜାଣିଲା, ସେତେ-ବେଳେ ରାଜା ସେ ପ୍ରସ୍ତାବ ଦେଲେ ନାହିଁ କାହିଁକି ? ପୁଣି ଯେଉଁ ଉଜ୍ଜ୍ୱଳ ରାଜ୍ୟ ସେ ଯୁଦ୍ଧ କରି ଅଧିକାର କରିଥିଲେ, ତାକୁ ବା



ପୁଣି ଘୁଞ୍ଚିଦେଲେ କାହିଁକି ? ଊର୍ମିଳା ପ୍ରତି ତାଙ୍କର କୃତଜ୍ଞ ହେବାର ବା କାରଣ କ'ଣ ? ରାଜା ! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ କହିଲେ, "ବାସନ୍ତୀର ଅପମାନ-ଜନକ କଥା ସତ୍ତ୍ୱେ ରାଜା ବିଶେଷ ପ୍ରତିକ୍ରିୟା ପ୍ରକାଶ ନକରିବାର କାରଣ ଦୁଇଟି । ପ୍ରଥମତଃ ସେ ବାସନ୍ତୀକୁ ପୂର୍ବରୁ ଦେଖି ତା' ପ୍ରତି କୋମଳ ମନୋଭାବ ପୋଷଣ କରିଥିଲେ । ଦ୍ୱିତୀୟତଃ ବାସନ୍ତୀର କଥାରୁ ସେ ବୁଝିଲେ ଯେ ଉଜ୍ଜ୍ୱଳ ଦେଶର ଲୋକେ ତାଙ୍କୁ ତାଙ୍କ ରାଜ୍ୟ ଜୟ ଯୋଗୁଁ କୌଣସି ଗୌରବ ଦେଉ ନାହାନ୍ତି । ବରଂ ଉଜ୍ଜ୍ୱଳ ରାଜ୍ୟର ଦୁରବସ୍ଥା ଦେଖି ସେ ରାଜ୍ୟଟି କରଗତ କରିବା ହେତୁ ତାଙ୍କୁ ଦୁଷ୍ଟ ବୋଲି ଭାବୁଛନ୍ତି । ରାଜା କୀର୍ତ୍ତିସେନ ଯେ ଜଣେ ଭଲ ଲୋକ, ଏଥିରେ ସନ୍ଦେହ ନାହିଁ । ରାଜ୍ୟ ଜୟ କରିବା ଗୋଟାଏ ପରମ୍ପରା ବୋଲି ସେ ଉଜ୍ଜ୍ୱଳ ଅଧିକାର କରିଥିଲେ । କିନ୍ତୁ ସେଥିଯୋଗୁଁ ସେ ନିନ୍ଦିତ ହେବାକୁ ପ୍ରସ୍ତୁତ ନଥିଲେ । ତେଣୁ ସେ ଉଜ୍ଜ୍ୱଳ ଉପରେ ନିଜ ଅଧିକାର ତ୍ୟାଗ କଲେ । ଉଜ୍ଜ୍ୱଳ ରାଜ୍ୟର ଲୋକେ ତାଙ୍କ ବିଷୟରେ କ'ଣ ଭାବୁଛନ୍ତି, ଊର୍ମିଳା ସେହି କଥା ଜଣାଇ ଦେଇଥିବାରୁ ସେ ତା' ପ୍ରତି କୃତଜ୍ଞ ହେଲେ ।

"ସେ ଊର୍ମିଳାକୁ ବିବାହ କରିବାର ପ୍ରସ୍ତାବ ନଉଠାଇବାର କାରଣ, ଊର୍ମିଳା ସଭାଜନଙ୍କ ଆଗରେ ନିଜର ଯେପରି ଉଗ୍ର-ରୂପ ଦେଖାଇଲା, ତାହା ଯେତେ ଯୁକ୍ତିଯୁକ୍ତ ହେଲେ ମଧ୍ୟ ରାଣୀ ହିସାବରେ ଯେଉଁ ଭାବମୂର୍ତ୍ତି ରହିବା କଥା, ତାହା ନଷ୍ଟ ହେଲା ।"

ରାଜାଙ୍କ ଉତ୍ତର ଦାନ ଶେଷ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ଯୋଗ୍ୟ-ଅତିଯୋଗ୍ୟ

ମହେନ୍ଦ୍ରପୁରୀ ରାଜ୍ୟର କୋଷାଧ୍ୟକ୍ଷ ଥିଲେ କନକ ଗୁପ୍ତ । ସେ ଅନେକଦିନ ପର୍ଯ୍ୟନ୍ତ ଏକୁଟିଆ ସବୁ କାମ ଚଳାଉଥିଲେ । କିନ୍ତୁ କ୍ରମେ କାମ ବହୁତ ବଢ଼ିଗଲା । ରାଜ୍ୟରେ ନୂଆ ନୂଆ ବିଭାଗ ଖୋଲା ହେଲା । ସବୁ ବିଭାଗର ହିସାବ ରଖିବା ତାଙ୍କ ପକ୍ଷରେ କଷ୍ଟକର ହେଲା । ସେ ରାଜାଙ୍କୁ କହିଲେ, ତାଙ୍କୁ ଦୁଇଜଣ ସହକାରୀ ନିଯୁକ୍ତ କରିବାକୁ ଅନୁମତି ମିଳୁ ।

ରାଜା ଅନୁମତି ଦେଲେ ଓ ମନ୍ତ୍ରୀଙ୍କୁ କହିଲେ, "କନକ ଗୁପ୍ତଙ୍କୁ ଦୁଇଜଣ ବିଶ୍ୱସ୍ତ ଲୋକ ମିଳିବା ଆବଶ୍ୟକ ।"

ଦୁଇମାସ ପରେ ମନ୍ତ୍ରୀ ରାଜାଙ୍କ ପାଖରେ ଅଭିଯୋଗ କଲେ, "ମହାରାଜ ! ଆପଣ କନକ ଗୁପ୍ତଙ୍କୁ ଦୁଇଜଣ ସହକାରୀ ନିମନ୍ତେ ଅନୁମତି ଦେଇଥିଲେ, କିନ୍ତୁ ସେ ତିନିଜଣ ନିଯୁକ୍ତ କରିଛନ୍ତି ।"

"ଏହା ତ ଅନ୍ୟାୟ କଥା !" ଏହା କହି ରାଜା କନକ ଗୁପ୍ତଙ୍କୁ ଡକାଇଲେ ଓ ପଚାରିଲେ, "ତମେ ତିନିଜଣ କୋଷାଧ୍ୟକ୍ଷ ନିଯୁକ୍ତ କରିଛ ? ତମକୁ ତ ଦୁଇଜଣ ପାଇଁ ଅନୁମତି ଦେଇଥିଲି ଓ ସେହି ଅନୁସାରେ ଦରମା ମଞ୍ଜୁର କରିଥିଲି । ତୃତୀୟ ଜଣକର ଦରମା ଦେଉଛ କିଏ ?"

"ମହାରାଜ, ଆପଣ ଦୁଇଜଣଙ୍କ ପାଇଁ କେତେ ଦରମା ମଞ୍ଜୁର କରିଥିଲେ, ସେକଥା ମୋ ଛଡ଼ା ଆଉ କେହି ଜାଣନ୍ତି ନାହିଁ । ମୁଁ ସେହି ମଞ୍ଜୁର ପରିମାଣ ଭିତରେ ତିନିଜଣଙ୍କୁ ନିଯୁକ୍ତି ଦେଇଛି ।" କନକ ଗୁପ୍ତ ନମ୍ର ଭାବରେ ଉତ୍ତର ଦେଲେ ।

ରାଜେନ୍ଦ୍ରଶର୍ମା

ରାଜା ଆଉକିଛି କହିବା ପୂର୍ବରୁ ମନ୍ତ୍ରୀ ଆସି ପହଞ୍ଚିଗଲେ ଓ ଧମକଦେବା କଣ୍ଠରେ ପଚାରିଲେ, "ଆରେ ବାବୁ, ତମେ କେତେ ଟଙ୍କା ଭିତରେ କେତେଜଣଙ୍କୁ ଚାକିରିରେ ରଖାଇଲ ସେଇଟା ପ୍ରଶ୍ନ ନୁହେଁ । ରାଜା ତମକୁ ଦୁଇଜଣ କର୍ମଚାରୀ ରଖିବାକୁ କହିଥିବା ସ୍ଥଳେ ତମେ ତିନିଜଣଙ୍କୁ ରଖିଛ, ଏହାଦ୍ୱାରା ତମେ ରାଜାଙ୍କ ଆଦେଶ ଲଙ୍ଘନ କରିଛ ବୋଲି ବୁଝାଯିବ ।"

"ଆଜ୍ଞା, ମୁଁ ସେ ଦୃଷ୍ଟିରୁ ଦେଖି ନାହିଁ । କାମ କିପରି ସନ୍ତୋଷ ଜନକ ଭାବରେ ହୋଇ ପାରିବ, ସେହି ଦୃଷ୍ଟି କୋଣରୁ ଦେଖିଛି ।" କନକ ଗୁପ୍ତ କହିଲେ ।

"ଯଦି କାମ ତିନିଜଣରେ ହେବ, ତେବେ ତମେ ସେକଥା ନ କହି ଦୁଇଜଣ ଲୋଡ଼ା ବୋଲି କହିଲ କାହିଁକି ?" ରାଜା ପଚାରିଲେ ।

"ଆଜ୍ଞା, ଦୁଇଜଣରେହିଁ ହେବା କଥା କିନ୍ତୁ…

"କିନ୍ତୁ କ'ଣ ?" ରାଜା ପଚାରିଲେ ।

"ମନ୍ତ୍ରୀ ଯେଉଁ ଦୁଇଜଣଙ୍କୁ ପଠାଇଲେ, ସେ ଦୁଇଜଣଙ୍କ ପାଇଁ ଜଣେ ତୃତୀୟ ବ୍ୟକ୍ତି କାମ ନକଲେ ନ ଚଳେ !"

ମନ୍ତ୍ରୀ ଚିଡ଼ି ଯାଇ କହିଲେ, "ମୁଁ ପଠାଇଥିବା ଲୋକ ଅଯୋଗ୍ୟ ?"

"ନା, ଆଜ୍ଞା, ଅତି ଯୋଗ୍ୟ । ସେମାନଙ୍କ ବିଶେଷ ଯୋଗ୍ୟତା ହେଲା ଜଣେ ଆପଣଙ୍କ ଭାଇ ଓ ଅନ୍ୟ ଜଣକ ଆପଣଙ୍କ ସ୍ତ୍ରୀଙ୍କ ଭାଇ । ସେମାନଙ୍କର ଏହି ଯୋଗ୍ୟତା ଯୋଗୁଁ ସେମାନେ କାମରେ ହେଳା ବା ଭୁଲ୍ କଲେ ତାଗିଦା କରିବା କାହାକୁ ? ତୃତୀୟ ଲୋକଟିଏ ଥିଲେ ସେତେ ଧମକ ଚମକ ଦେଇ କାମ କରାଇବା କଥା ତାକୁ ଦେଇ କରାଇବ !" କନକ ଗୁପ୍ତ ବୁଝାଇଦେଲେ ।

ମନ୍ତ୍ରୀଙ୍କ ମୁହଁ ଲାଲ୍ ପଡ଼ିଗଲା । ରାଜା ଅଳ୍ପ ହସି କହିଲେ, "ଆଚ୍ଛା ହେଉ, ତମେ ଯାଇ ପାର !"





# ମଧ୍ୟମ ମାର୍ଗ

ମାଳା ଶ୍ୱଶୁର ଘରକୁ ଆସି ଦୁଇଦିନ ରହିବା ଭିତରେ ବୁଝିଗଲା, ତା' ସ୍ୱାମୀ ଆଦିତ୍ୟ ଦରକାର ନଥିଲେ ବି ଗୁଡ଼ାଏ କଥା କହିବାକୁ ଭଲ ପାଏ । ତାକୁ ଯଦି ପଚାରିଦେବ ଯେ ଆଜି କେତେବେଳେ କାମକୁ ଯିବ, ତେବେ ସେ ଆଜି ତାକୁ ଯେତେ ପ୍ରକାର କାମ କରିବାକୁ ହେବ, ସେସବୁର ପୁରା ତାଲିକା ଗାଇଯିବ ।

ଯଦି କାହା ସହିତ ଗପ ଆରମ୍ଭ ହେଲା, ତେବେ ସେ ଲୋକ ଯେତିକି କହିବ, ଆଦିତ୍ୟ ତା'ର ପାଞ୍ଚଗୁଣ ଜବ୍ବର୍ କହିବ ।

ପ୍ରଥମେ ପ୍ରଥମେ ମାଳା ପ୍ରକାରାନ୍ତରେ ଆଦିତ୍ୟକୁ ତା' ବାଚାଳତା ବିଷୟରେ ଚେତେଇ ଦେବାକୁ ଚେଷ୍ଟା କଲା । କିନ୍ତୁ କିଛି ଫଳ ହେଲା ନାହିଁ । ବିରକ୍ତ ହୋଇ ସେ ନିଜେ ତେଣିକି କଥାବାର୍ତ୍ତା କମ୍ କରିଦେଲା । ଶେଷକୁ ହଁ ବା ନାଁ ଛଡ଼ା ସେ ଆଉ ପ୍ରାୟ କିଛି କହିଲା ନାହିଁ । ତେଣିକି ଅବସ୍ଥା ଏପରି ହେଲା ଯେ ତା'ଠୁଁ ସେତିକି ଶୁଣିବା ପାଇଁ ମଧ୍ୟ କଷ୍ଟ କରିବାକୁ ପଡ଼ିଲା ।

ମାଳାର ଜଣେ ବାନ୍ଧବୀ ବାହା ହେଉଥାଏ । ବାନ୍ଧବୀର ଘର ସହରରେ । ମାଳା ଯିବା କଥା । ସେତିକି ସେ ଆଦିତ୍ୟକୁ କହିବା ମାତ୍ରେ ଆଦିତ୍ୟ ଆରମ୍ଭ କଲା, "ଆରେ, ସେପରି ବାନ୍ଧବୀ ବାହାଘରକୁ ଯିବ ନାହିଁତ ଆଉ କାହା ବାହାଘରକୁ ଯିବ? ପ୍ରାୟ ଦେଖାଯାଏ, ନିଜ ଆତ୍ମୀୟ ସ୍ୱଜନଠାରୁ ବନ୍ଧୁମାନେ ବେଶି ଉପକାର କରନ୍ତି । ପୁଣି ବାହାଘର । ତାହାଠୁଁ ବଳି ଗୁରୁତ୍ୱପୂର୍ଣ୍ଣ ସାମାଜିକ ଅନୁଷ୍ଠାନ ଆଉ କ'ଣ ଅଛି? ମୋ ବନ୍ଧୁମାନେ ପ୍ରାୟ ସମସ୍ତେ ବାହାସାହା ହୋଇ ସାରିଲେଣି । ବର୍ତ୍ତମାନ ବାକି ଅଛନ୍ତି…"

" ଜଳ ବର୍ଷିନେ ସୃଷ୍ଟି ନାଶ, ଜଳ ବର୍ଷିଲେ ସୃଷ୍ଟି ନାଶ!"



"ବର୍ତ୍ତମାନ ଏତେ କଥା କହିବା କ'ଣ ଦରକାର? ମୋ ଯିବାରେ ତମର ଆପତ୍ତି ନାହିଁ, ଏହାହିଁ ଯଥେଷ୍ଟ।" ମାଳ କହିଲା।

ସେ ଗାଁରୁ ସହରକୁ ସର୍ବଦା ଘୋଡ଼ାଗାଡ଼ି ଯିବା ଆସିବା କରୁଥାଏ। ମାଳ ଯାଇ ଠିକ୍ ସମୟରେ ବାନ୍ଧବୀ ଘରେ ଉପସ୍ଥିତ ହେଲା। ବାହାଘରକୁ ଅନେକ ଶହ ଲୋକ ଆସିଥାନ୍ତି। କିନ୍ତୁ ମାଳ ତା' ଅଭ୍ୟାସ ଅନୁସାରେ କାହା ସହ ବିଶେଷ କଥାଭାଷା ହେଉ ନଥାଏ। ତା'ର ଜଣେ ପୁରୁଣା ସାଙ୍ଗ ସୁମତି ତା' ସ୍ୱାମୀ ରାଜେନ୍ଦ୍ରକୁ ଚୁପି ଚୁପି କହିବାର ସେ ଶୁଣିପାରିଲା, "ମାଳ ମୋ ସହ ଟିକିଏ ଭଲ ଭାବରେ କଥାବାର୍ତ୍ତା ବି କଲା ନାହିଁ। କ'ଣ ତା'ର ହୋଇଛି କେଜାଣି। ସିଏ ଯଦି ଏମିତି ଫୁଲେଇ ଦେଖାଉଛି, ଉପରେ ପଡି ତା' ସହ ମୋର କଥାବାର୍ତ୍ତା ହେବାର ବା କ'ଣ ଦରକାର!"

ପରଦିନ ସକାଳେ ବରକନ୍ୟା ବିଦାୟ ହୋଇଯିବା ପରେ ଅତିଥିମାନେ ଯିଏ ଯାହା ଘରକୁ ବାହାରିଗଲେ। ମାଳ ବି ତା' ବାନ୍ଧବୀର ବାପା ମା'ଙ୍କଠୁଁ ବିଦାୟ ନେଇ ରାସ୍ତାକୁ ଆସିଲା। ଗାଡ଼ିଟିଏ ପାଇଲେ ଗାଁକୁ ଯିବ, ସେହି ଅପେକ୍ଷାରେ ଥାଏ। ସୁମତି ଓ ରାଜେନ୍ଦ୍ର ଗୋଟାଏ ଗାଡିରେ ସେ ବାଟେ ଗଲେ। ସେମାନେ ମାଳର ଗାଁ ଟପି ଯିବେ। ମାଳ ସୁରୁଖୁରୁରେ ସେମାନଙ୍କ ସହ ଯାଇ ପାରିଥାନ୍ତା। ସେମାନେ ବି ଗାଡ଼ିବାଲାକୁ ଟିକିଏ ରହିବାକୁ କହୁଥିବାର ସେ ଶୁଣି ପାରିଲା। କିନ୍ତୁ ତା' ସମ୍ପର୍କରେ ପୂର୍ବଦିନ ସୁମତି ଯେପରି ମନ୍ତବ୍ୟ ଦେଉଥିଲା, ସେ କଥା ମନେ ପକାଇ ସେ ସେମାନଙ୍କୁ ଦେଖି ନ ଦେଖିଲା ଭଳି ଅନ୍ୟ ଆଡ଼େ ମୁହଁ ବୁଲେଇ ନେଲା। ସେମାନେ ବି ଚାଲିଗଲେ।

ତା'ପରେ କିନ୍ତୁ ଆଉ ଗାଡ଼ି ମିଳିଲା ନାହିଁ। ବେଳ ରତରତ ଗୋଟାଏ ଗାଡ଼ି ସହ ଦୁଇଗୁଣ ଭଡ଼ା ଛିଡ଼େଇ ସେ ବସିଲା।

ଗାଡ଼ି ମନ୍ଥର ଭାବରେ ଯାଉଥାଏ। ସନ୍ଧ୍ୟା ହୋଇଗଲା। ଅନ୍ଧକାର ପକ୍ଷ। ସହଜ ଅନ୍ଧାର ହୋଇ ଆସିଲା। ଗୋଟାଏ ନିଛାଟିଆ ସ୍ଥାନରେ ଗାଡ଼ି ଅଟକିଲା।

"ଗାଡ଼ି କାହିଁକି ରଖିଲ ? ବିଳମ୍ବ ହେଉଛି !" ମାଳୀ କହିଲା ।

"ଚୁପ୍‌ଚାପ୍‌ ପାଖରେ ଯାହା ଟଙ୍କା ପଇସା ଅଛି ଦେଇଦିଅ । ହାରଟି ବି ଦରକାର ।" ରୁକ୍ଷ କଣ୍ଠରେ ଗାଡ଼ିବାଲା କହିଲା । ଚମକିପଡ଼ି ମାଳୀ ତା' ଆଡ଼େ ଅନାଇ ଦେଖେ ତ ତା' ହାତରେ ଗୋଟାଏ ଛୁରୀ ଚକ୍ ଚକ୍ କରୁଛି ।

ମାଳୀ ଗାଡ଼ିରୁ ଓହ୍ଲାଇ ପଡ଼ିଲା । ଗାଡ଼ିବାଲା ବି ଛୁରୀ ଦେଖାଇ ଓହ୍ଲାଇଲା । ମାଳୀ ବିଳମ୍ବ ନକରି ତା' ପାଖରେ ଥିବା ଟଙ୍କାତକ ଦେଇ ଦେଲା ।

"ହାର ବାହାର କର !" ଗାଡ଼ିବାଲା କଠୋର ସ୍ୱରରେ କହିଲା । ମାଳୀ ଦୋଦୋପାଞ୍ଚ କରୁଛି, ଏତିକିବେଳେ ଦୂରରୁ ଆଉ ଗୋଟିଏ ଗାଡ଼ି ଖୁବ୍ ବେଗରେ ଆସୁଥିବାର ଦେଖି ଗାଡ଼ିବାଲା ତା' ହାରକୁ ଝିଙ୍କି ଆଣିଲା । ହାର ଛିଡ଼ି ତଳେ ପଡ଼ିଗଲା । ଅନ୍ଧାର ଯୋଗୁଁ ଗାଡ଼ିବାଲା ତାକୁ ଦେଖି ପାରିଲା ନାହିଁ । ତେଣେ ଅନ୍ୟ ଗାଡ଼ିଟି ନିକଟତର ହୋଇ ଆସୁଥାଏ । ଗାଡ଼ିବାଲା ନିଜ ଗାଡ଼ି ଝପଟାଇ ପଳାଇଗଲା ।

ମାଳୀ ଅନ୍ୟ ଗାଡ଼ିଟିକୁ ଅଟକାଇ ପାରିଥାନ୍ତା । କିନ୍ତୁ ଭୟରେ ସେ ନିର୍ବାକ୍ ହୋଇ ଯାଇଥାଏ । ପ୍ରକୃତିସ୍ଥ ହେବା ବେଳକୁ ସେ ଗାଡ଼ି ଚାଲିଗଲାଣି ।

ଚାଲି ଚାଲି ମାଳୀ ଆସି ଅଧରାତି ବେଳକୁ ନିଜ ଘରେ ପହଞ୍ଚିଲା । ସବୁ କଥା ଶୁଣି ଆଦିତ୍ୟ କହିଲା, "ତମକୁ ଏକୁଟିଆ ଯିବାକୁ





ଦେବା ହେଲା ମୋର ପ୍ରଥମ ଭୁଲ । ବେଶି ଟଙ୍କା ତମ ହାତରେ ଦେବା ହେଲା ମୋର ଦ୍ୱିତୀୟ ଭୁଲ । ହାରଟି ଗଡ଼ାଇ ଦେଇଥିବା ହେଲା ତୃତୀୟ ଭୁଲ । ଏଣିକି...”

“ଥାଉ । ସେସବୁ ପରେ ଶୁଣିବି । ହାରଟି ଛିଡ଼ି ଯାଇଛି । ଏଇ ବାକ୍ସରେ ରଖିଲି । ଆଗାମୀ କାଲି ଟିକିଏ ମରାମତି କରି ଆଣିବ ।” ମାଳୀ କହିଲା ।

ମରାମତି କରିବା ପାଇଁ ଆଦିତ୍ୟର କୌଣସି ଅସୁବିଧା ହେବା କଥା ନୁହେଁ । କାରଣ ସେ ଥିଲା ଅଦୂରବର୍ତ୍ତୀ ବଜାରର ଏକମାତ୍ର ଗହଣା ଦୋକାନରେ ମୁଖ୍ୟ ବିକ୍ରେତା । ତେବେ ପରଦିନ ହାରଟି ନେବାକୁ ସେ ଭୁଲିଗଲା ।

ଦୋକାନରେ ଜଣେ ଖରିଦ୍ଦାର ଆସି ହାର ଦେଖିବାକୁ ଚାହିଁଲେ । ଆଦିତ୍ୟ ଯେତେ ହାର ଦେଖାଇଲା, ତାଙ୍କ ମନ ମାନିଲା ନାହିଁ । “ମୋତେ ପତଳା ହାରଟିଏ ଦେଖାଅ ।” ସେ କହିଲେ ।

“ଆଜ୍ଞା, ପତଳା ହାର ଗଡ଼ାଇବା ବୋକାମି । ବୁଝିଲେ? ଆପଣ କହିଲେ ମିଛ ମଣିବେ, ଏଇ କାଲି ସନ୍ଧ୍ୟାବେଳେ ମୋ ସ୍ତ୍ରୀ ତା' ପତଳା ହାରଟି ଚୈାରକୁ ଦେଇ ପକାଇଥିଲା, ଦେବାତ୍ ବର୍ତ୍ତିଗଲା ।”

ସମ୍ପ୍ରଦାୟ ଘଟଣା ଗପିସାରି ଆଦିତ୍ୟ କହିଲା, “ହାର ପତଳା ହୋଇ ନଥିଲେ କ ସହଜରେ ଛିଡ଼ିଥାନ୍ତା? ମୁଁ ଘରୁ ଆଣିବାକୁ ଭୁଲିଗଲି । ନହେଲେ ଆପଣଙ୍କୁ ଦେଖାଇଥାନ୍ତି । ଘର ବେଶି ଦୂର ନୁହେଁ । ସତର ନମ୍ବର ଘଣ୍ଟାକର୍ଣ୍ଣ ଗଳି । ତେବେ ଦୋକାନ ଛାଡି ଯାଇପାରୁ ନାହିଁ ।”

“ହେଲା, ହେଲା ବାବୁ । ମୋ ଦେଖିବା ଦରକାର ନାହିଁ ।” ଏହା କହି ଗରାଖ ଚାଲିଗଲେ ।

ସନ୍ଧ୍ୟାବେଳକୁ ଆଦିତ୍ୟ ଘରକୁ ଲେଉଟିବା ମାତ୍ରେ ମାଳୀ ପଚାରିଲା, “ହାର ମରାମତି ହୋଇଗଲା?”

“କିପରି ହୋଇଥାନ୍ତା? ମୁଁ ତ ନେବାକୁ ଭୁଲିଗଲି । ଆଗାମୀ କାଲି କରାଇ ଆଣିବ ।” ଆଦିତ୍ୟ କହିଲା ।

"ମାନେ ?" ଆଶ୍ଚର୍ଯ୍ୟ ହୋଇ ମାଳା ପଚାରିଲା ।

ବୁଝିବା ବେଳକୁ କେହି ଜଣେ ଲୋକ ଆସି ମାଳାକୁ କହିଲା, "ଆପଣଙ୍କ ସ୍ୱାମୀ ଛୁଡ଼ା ହାରଟି ନେବାକୁ ଭୁଲି ଯାଇଛନ୍ତି । ଦୋକାନରେ ଯାଇ ତାଙ୍କର ମନେ ପଡ଼ିଲା । ସେ ତ ଦୋକାନ ଛାଡ଼ି ଆସି ପାରିବେ ନାହିଁ, ସେଥିପାଇଁ ମୋତେ ପଠାଇଲେ । ଗଲା କାଲି ଯେ ସେ ଡାକୁ ଗାଡ଼ିବାଲା ଆପଣଙ୍କର ଆଉ କିଛି ଅନିଷ୍ଟ କରି ନାହିଁ, ସେଥିପାଇଁ ଆପଣଙ୍କ ଭାଗ୍ୟ ଭଲ ବୋଲି କହିବାକୁ ହେବ ।"

ମାଳାର ଧାରଣା ହେଲା ଲୋକଟି ଦୋକାନରେ ଜଣେ କର୍ମଚାରୀ ଏବଂ ଆଦିତ୍ୟର ବିଶ୍ୱାସୀ । ସେ ହାର ଦେଇଦେଲା ।

ଆଦିତ୍ୟ ମୁଣ୍ଡରେ ଚଡ଼କ ପଡ଼ିଲା । ସେ ପଚାରିଲା, "ଲୋକଟି ବଢ଼ା ? ନିଶ ରଖିଛି ? ମାଟିଆ ରଙ୍ଗର କୁର୍ତ୍ତା ପିନ୍ଧିଥିଲା ?"

"ଠିକ୍, ଠିକ୍ ।" ମାଳା କହିଲା ।

ଆଦିତ୍ୟ ବୁଝିଲା, ସିଏ ଆଉ କେହି ନୁହେଁ, ସେ ଗରାଖ ।

"ମୁଁ ଗୃହର ହାବୁଡ଼ରେ ପଡ଼ିଥିବା କଥା ତମେ ନିଶ୍ଚୟ ତାକୁ ଗପିଛ ! ହାର ଭୁଲରେ ଘରେ ଛାଡ଼ିଯାଇଥିବା କଥା ବି ଗପିଥିବ !" ମାଳା କହିଲା ।

ଆଦିତ୍ୟ ଚୁପ୍ ରହିଲା ।

ସେମାନଙ୍କ ଘରେ କାମ କରୁଥିବା ବୁଢ଼ୀ କହିଲା, "ତମେ ଦୁହେଁ ମୋ ପୁଅ ଝିଅ ଭଳି । ତେଣୁ ମୁଁ କଥାଟିଏ କହିବି । କିଛି ଭାବିବ ନାହିଁ । ବାବୁ ଆମର ଟିକିଏ ବେଶି କଥା କହନ୍ତି । ମା ଆମର ଅତି କମ୍ କହନ୍ତି । ଏମିତି ନହୋଇ ଦୁହେଁ ଯେତିକି ପ୍ରୟୋଜନ ସେତିକି କହିଲେ ଭଲ ହୁଅନ୍ତା । ମଧ୍ୟମ ମାର୍ଗ ସବୁଠୁଁ ଭଲ ।"

ଆଦିତ୍ୟ ଓ ମାଳା ସଲଜ୍ଜ ଭାବରେ ହସିଲେ ।





# ପରିବର୍ତ୍ତନ

ଅନେକ ଦିନ ପୂର୍ବେ କାଶୀରାଜ୍ୟରେ ବ୍ରହ୍ମଦତ୍ତ ରାଜା ଥା'ନ୍ତି। ସେ ସିଂହାସନରେ ବସିବା ଦିନଠାରୁ ଖୁବ୍ କଠୋର ଓ ନିଷ୍ଠୁର ବ୍ୟବହାର କରୁଥା'ନ୍ତି। ସେ ଥିଲେ ବହୁତ ଅହଂକାରୀ। କୌଣସି କିଛି ପୁରୁଣା ବା ବୁଢ଼ା ମନୁଷ୍ୟ ବା ଜନ୍ତୁ ଦେଖିଲେ ସେ ରାଗରେ ନିଆଁ ହୋଇ ଯାଉଥିଲେ। ପୁରୁଣା ଜିନିଷ ସବୁ ନଷ୍ଟ କରିବାକୁ ଆଦେଶ ଦେଉଥିଲେ ଓ ଧଳା ଦାଢ଼ୀଥିବା ଲୋକମାନଙ୍କୁ ଦେଖିଲେ ଦାଢ଼ୀ ଟାଣି ଗଡ଼େଇ ତଡ଼େଇ ପିଟିବାକୁ ଆଦେଶ ଦେଉଥିଲେ।

ରାଜାଙ୍କର କେହି କେହି ହିତୈଷୀ ରାଜାଙ୍କୁ ଏଭଳି କାର୍ଯ୍ୟରୁ ନିବର୍ତ୍ତଇବା ନିମନ୍ତେ ଚେଷ୍ଟା କରି ବିଫଳ ହେଲେ। ମନ୍ତ୍ରୀମାନେ ଡରରେ କିଛି କହୁ ନଥାନ୍ତି। ଅବଶ୍ୟ ଅନେକେ ରାଜାଙ୍କ ଏକାମରୁ ମଜା ପାଉଥାନ୍ତି। ତାଙ୍କର ଏପରି ନିରର୍ଥକ ଖିଆଲ ଦେଖି ପ୍ରଜାମାନେ ନିଜ ନିଜର ବୃଦ୍ଧ ପିତାମାତାଙ୍କୁ ଦୂର ଦେଶରେ ଥିବା କୌଣସି ବନ୍ଧୁବାନ୍ଧବଙ୍କ ଘରେ ନେଇ ଛାଡ଼ି ଆସୁଥିଲେ। ତଦ୍ୱାରା ପିତାମାତାଙ୍କୁ ସେବା କରିବାରୁ ସେମାନେ ବଞ୍ଚିତ ହେଉଥିଲେ ଓ ବୃଦ୍ଧାବସ୍ଥାରେ ସେମାନଙ୍କୁ କଷ୍ଟ ଦେବା ଦ୍ୱାରା ବହୁତ ପାପ ଅର୍ଜ୍ଜନ କରୁଥିଲେ। ଏସବୁ କିନ୍ତୁ ରାଜାଙ୍କ ଅତ୍ୟାଚାର ଭୟରେ ଓ ନିଜର ଇଚ୍ଛା ବିରୁଦ୍ଧରେ। ତଥାପି ମଧ୍ୟ କେହି ରାଜାଙ୍କ ଶାସନ ବିରୁଦ୍ଧରେ କିଛି କହିପାରୁ ନ ଥିଲେ। ସେ ରାଜ୍ୟରୁ ଯିଏ ମରିଯାଏ ସେ ସ୍ୱର୍ଗକୁ ନ ଯାଇ ନର୍କକୁ ଯାଏ। କ୍ରମେ ନର୍କରେ ଲୋକ ଭର୍ତ୍ତି ହେଲେ ଓ ସ୍ୱର୍ଗ ରାଜ୍ୟ ଖାଲି ରହିଲା। ସେହି ସମୟରେ ବୋଧିସତ୍ତ୍ୱ ସ୍ୱର୍ଗରେ ଇନ୍ଦ୍ର ହୋଇଥା'ନ୍ତି। ଏପରି ପରିସ୍ଥିତି ଦେଖି ସେ

ବଡ଼ ଦୁଃଖିତ ହେଲେ । ସେ ଗୋଟାଏ ଉପାୟ ପାଞ୍ଚିଲେ ।

ଦିନେ କାଶୀରେ କିଛି ଉତ୍ସବ ପାଳନ ହେଉଥାଏ । ସାରା ରାଜ୍ୟ ସଜାସଜି ହୋଇ ସୁନ୍ଦର ଦେଖା ଯାଉଥାଏ । ରାଜପଥ ଉପରେ ଦୁଇ କଡ଼ରେ ଅସଂଖ୍ୟ ଜନତାଙ୍କ ମଧ୍ୟରେ ହାତୀ ଉପରେ ବସି ବୁଲୁଥା'ନ୍ତି ମୂର୍ଖ ରାଜା ।



ଠିକ୍ ଏଇ ସମୟରେ ଇନ୍ଦ୍ର ଏକ ଗରିବ ବୁଢ଼ା ବେଶ ଧରି ଏକ ଭଙ୍ଗା ଗାଡ଼ିରେ ଦୁଇ ମାଠିଆ ଢୋଲଦହି ଧରି ଯାଉଥା'ନ୍ତି । ଏଣେ ବଳଦ ଦୁଇଟା ମଧ୍ୟ ବୁଢ଼ା । ବୁଢ଼ା ଓ ତା'ର ଭଙ୍ଗା ଗାଡ଼ିକୁ ଦେଖି ରାଜା ତ ରାଗରେ ଜଳମାନ । ସେଇ ହାତୀ ଉପରୁ ଥାଇ ରାଗରେ ଥରି ଥରି ଗାଳି ଦେବାକୁ ଲାଗିଲେ ।

"ଆବେ ବୁଢ଼ା ତୁ କ'ଣ ମୋର ଶାସନ ବିଷୟ ଜାଣିନାହୁଁ । କିପରି ସାହସ କରି ଭଙ୍ଗା ଗାଡ଼, ପୁରୁଣା ମାଠିଆ ଓ ବୁଢ଼ା ବଳଦକୁ ଧରି ମୋ ଆଗକୁ ଆସିଛୁ । ମୋ ସାମନାରୁ ବାହାରି ଯା ନଇଲେ ତତେ ମାରି ଦେବି ।"

ସବୁଠାରୁ ମଜାକଥା ହେଲା, ବୁଢ଼ା ଓ ତା' ଗାଡ଼ିକୁ ରାଜାଙ୍କ ବ୍ୟତୀତ ଆଉ କେହି ଦେଖିପାରୁ ନଥା'ନ୍ତି । ତେଣୁ ସମସ୍ତେ ଭାବିଲେ ରାଜା ବୋଧହୁଏ ପାଗଳ ହୋଇ ଯାଇଛନ୍ତି । ରାଜା ଯେତେ ରାଗୁଥା'ନ୍ତି ସମସ୍ତେ ସେତେ ଆଶ୍ଚର୍ଯ୍ୟ ହୋଇ ମୁହଁରେ ଲୁଗା ଦେଇ ହସୁଥା'ନ୍ତି । ରାଜା ଚିତ୍କାର କରି ହାଲିଆ ହେଉଥା'ନ୍ତି କିନ୍ତୁ ଇନ୍ଦ୍ରରୂପୀ ବୋଧିସତ୍ତ୍ୱ ଆହୁରି ପାଖକୁ ପାଖକୁ ଆସୁଥା'ନ୍ତି କେହି ତାଙ୍କୁ ଅଟକାଉ ନାହାନ୍ତି ଦେଖି ରାଜା ଆହୁରି ରାଗୁଥା'ନ୍ତି । ଅବଶେଷରେ ଅତି ନିକଟକୁ ଆସି ବୋଧିସତ୍ତ୍ୱ ରାଜାଙ୍କ ମୁଣ୍ଡରେ ଗୋଟିଏ ଦହିମାଠିଆ କଚାଡ଼ିଦେଲେ । ସେଥିରେ ରାଜା ଉଦରଗଲେ । ସେ ହାତୀ ନେଇ ଟିକିଏ ଦୂରକୁ ପଳାଇ ଗଲେ । ପୁଣି ଆଉ ଗୋଟାଏ ଦହିମାଠିଆ ତାଙ୍କ ଉପରେ ବୋଧିସତ୍ତ୍ୱ କଚାଡ଼ିଦେଲେ । ସାରା ରାଜପୋଷାକ ଦହିରେ ଓଦା ହୋଇ ସେ ବଡ଼ ଚମତ୍କାର ଦେଖାଗଲେ । ଲୋକମାନେ ଆଉ କିଛି ଦେଖି ନ ପାରିଲେ ମଧ୍ୟ ଦହି ଓ ସେଥିଯୋଗୁ ରାଜାଙ୍କ ଅବସ୍ଥା କିପରି ସେଇଟା ଦେଖି

ପାଉଥିଲେ । ରାଜା ବହୁତ ଭୟ ପାଇଗଲେ । ତା'ପରେ ବୁଢ଼ା ତତ୍‌କ୍ଷଣାତ୍ ବଜ୍ରଧାରୀ ଇନ୍ଦ୍ରଙ୍କର ରୂପ ନେଇ ରାଜାଙ୍କୁ କହିଲେ—

"ତୁ ଏଡ଼େ ମୂର୍ଖ ରାଜା । ତୁ ଧନ ଓ ଐଶ୍ୱର୍ଯ୍ୟରେ ଅନ୍ଧ ହୋଇ, ଏପରି ନିଷ୍ଠୁରତା କରୁଛୁ ଯେ ତୋ ପ୍ରଜାମାନେ ନିଜ ନିଜର ମାତାପିତାଙ୍କୁ ତ୍ୟାଗ କରିବାକୁ ବାଧ୍ୟ ହେଉଛନ୍ତି ଓ ସେଥିଯୋଗୁ ପାପ ଅର୍ଜ୍ଜନ କରି ନରକଗାମୀ ହେଉଛନ୍ତି । ତୋର କ'ଣ କେବେ ବୃଦ୍ଧାବସ୍ଥା ହେବନାହିଁ ? ତୁ କାହିଁକି ବୃଦ୍ଧଲୋକ ଓ ପୁରୁଣା ଜିନିଷକୁ ଏତେ ଘୃଣା କରୁଛୁ ? ତୋର ଅତ୍ୟାଚାରର ସୀମା ନାହିଁ । ତୋର ରାଜ୍ୟର ଲୋକ ତୋ ଅତ୍ୟାଚାର ଭୟରେ ପାପ କରି ସବୁ ନର୍କକୁ ଯାଉଛନ୍ତି ଜଣେ ହେଲେ ସ୍ୱର୍ଗ ଯାଉନାହିଁ । ରାଜା ପ୍ରଜାଙ୍କର ପିତା ସଦୃଶ । ପ୍ରଜାଙ୍କର ଦୁଃଖ, କଷ୍ଟ, ହେଲେ ତୁ ସେମାନଙ୍କୁ ସାହାଯ୍ୟ କରିବା କଥା । ସାହାଯ୍ୟ କରିବା ପରିବର୍ତ୍ତେ ତୁ ଓଲଟା ଅତ୍ୟାଚାର କରୁଛୁ ? ପୁଣି ତୋର ମୂର୍ଖାମୀ ଯୋଗୁ ସେମାନଙ୍କୁ ପାପରେ ଭାଗୀ ହେବାକୁ ବାଧ୍ୟ କରୁଛୁ ? ଅତ୍ୟାଚାର ଓ ପ୍ରଜାପୀଡ଼ନ ଭୟରେ ନିରୀହ ଜନତା ତୋର ଅନ୍ୟାୟ କାର୍ଯ୍ୟ ଦେଖି ମଧ୍ୟ ବିଦ୍ରୋହ କରୁନାହାନ୍ତି । କିନ୍ତୁ କେତେଦିନ ଆଉ ସେମାନେ ସହିବେ ? ତୋର ବ୍ୟବହାରରେ ପରିବର୍ତ୍ତନ ନ ହେଲେ ସେମାନେ ବିଦ୍ରୋହ କରି ତତେ ମାରି ପକାଇବେ । ତା' ପୂର୍ବରୁ ତୁ ସତ୍ୟ ଓ ନ୍ୟାୟ ପଥରେ ଯାଇ ଶାସନ କର । ନଚେତ୍ ମୋର ବଜ୍ରହିଁ ତୋର ଶିରଚ୍ଛେଦ କରିବ ।" ଏକଥା କହି ସେ ଅଦୃଶ୍ୟ ହୋଇଗଲେ ।

ତା' ପରଠାରୁ ବ୍ରହ୍ମଦତ୍ତଙ୍କ ବ୍ୟବହାରରେ ସଂପୂର୍ଣ୍ଣ ପରିବର୍ତ୍ତନ ହେଲା । ପ୍ରଜାମାନେ ଦୂର ଦେଶରୁ ସେମାନଙ୍କ ବୃଦ୍ଧ ପିତାମାତାଙ୍କୁ ଫେରାଇ ଆଣିଲେ ଓ ସେମାନଙ୍କର ସେବା କରି ପୁଣ୍ୟ ଅର୍ଜ୍ଜନ କଲେ । ପ୍ରଜାମାନେ ସୁଖଶାନ୍ତିରେ ଜୀବନ ବିତାଇଲେ ।





ଭାରତ-କାହାଣୀ

# କୋମ୍ପାନୀର ରାଜୁତି

କ୍ରମେ ଇଷ୍ଟଇଣ୍ଡିଆ କୋମ୍ପାନୀ ଭାରତବର୍ଷ ଉପରେ ଆଧିପତ୍ୟ ବିସ୍ତାର କଲା । ଇଂଲଣ୍ଡରୁ ଜାହାଜ ଭର୍ତ୍ତି ମାଲ୍‌ମାନ ଆସି ପହଞ୍ଚିଲା । କିନ୍ତୁ ଭାରତରେ ଉତ୍କୃଷ୍ଟ ତିଆରି ହେଉଥିବାରୁ ସେସବୁ ବିକ୍ରି ହେଲା ନାହିଁ । ଭାରତ ଅଧିକାର କରିବାକୁ କୋମ୍ପାନୀ ସ୍ଥିର କଲା ।

ମଧ୍ୟେ ମଧ୍ୟେ ଇଂରେଜ୍‌ମାନେ ଚମତ୍କାର ସୂକ୍ଷ୍ମବସ୍ତ୍ର ବୁଣିପାରୁଥିବା ଭାରତୀୟ ବୁଣାକାରମାନଙ୍କ ଘର ଚଢ଼ଉ କରି ସେମାନଙ୍କ ତନ୍ତ ସାଙ୍ଗକୁ ସେମାନଙ୍କ ହାତ ଭାଙ୍ଗି ଦେଉଥିବାର ଦୃଷ୍ଟାନ୍ତ ଅଛି । ଫଳରେ ସେମାନେ ଭଲ ଲୁଗା ବୁଣି ପାରିବେ ନାହିଁ; ବିଦେଶୀ ଲୁଗାର ଚାହିଦା ବଢ଼ିବ । ଏହିପରି ଅନ୍ୟାୟ ଓ ହିଂସ୍ର ରୀତିରେ ସେମାନେ ବେପାର କଲେ ।





ବିସ୍ତୃତ ଅଞ୍ଚଳ ବ୍ୟାପି ଇଂରେଜ୍‌ମାନେ ନୀଳ ଚାଷ କରୁଥିଲେ । ଗ୍ରାମବାସୀ-ମାନଙ୍କୁ ନାମମାତ୍ର ମୂଲରେ ସେମାନେ କାମରେ ଲଗାଉଥିଲେ । ମୂଲିଆମାନଙ୍କ ଉପରେ ଅକଥନୀୟ ଅତ୍ୟାଚାର କରି ସେମାନଙ୍କଠାରୁ କାମ ଆଦାୟ କରୁଥିଲେ । କାମ ଟିକିଏ କମ ହେଲେ ଦରମା ମିଳୁ ନଥିଲା, ମିଳୁଥିଲା ଚାବୁକ ମାଡ଼ ।



ରାଜ ଜମିଦାରମାନଙ୍କୁ ଉତ୍ଖାତ କରିବା ଫଳରେ ସେମାନଙ୍କ ରାଜ୍ୟ ଜମିଦାରି କୋମ୍ପାନି ନେଇଯିବାକୁ ଲାଗିଲା । ବଣିକ ହୋଇ ମଧ୍ୟ ଛଳେ ବଳେ କୌଶଳେ କୋମ୍ପାନି ଭାରତର ସବୁଠାରୁ ବଡ଼ ଜମିଦାର ବନିଗଲା । କ୍ରମେ ସେମାନେ ନିଜ ସୈନ୍ୟବାହିନୀକୁ ବଡ଼ କଲେ ।

ଆଜି ହୁଏତ ଶୁଣିଲେ ଆଶ୍ଚର୍ଯ୍ୟ ଲାଗିବ— କିନ୍ତୁ କୋମ୍ପାନି ବିରୁଦ୍ଧରେ ପ୍ରଥମେ ବିଦ୍ରୋହର ଧ୍ୱଜା ଉଡ଼ାଇଲେ ଦଳେ ସନ୍ନ୍ୟାସୀ । କାରଣ ସେମାନେ କୌଣସି ତୀର୍ଥ ସ୍ଥାନକୁ ଗଲେ ସେମାନଙ୍କୁ ଟିକସ୍ ଦେବାକୁ ପଡ଼ିବ ବୋଲି କୋମ୍ପାନି ଆଇନ୍ କଲା । ଏଭଳି ଅଜବ କଥା ଭାରତରେ ଶୁଣା ନଥିଲା । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ହେଲା ଏହି ସନ୍ନ୍ୟାସୀ ବିଦ୍ରୋହ ।





କୋମ୍ପାନୀ ଓ୍ୱାରେନ୍ ହେଷ୍ଟିଂସ୍‌ଙ୍କୁ ଗଭର୍ଣ୍ଣର ନିଯୁକ୍ତ କରିଥିଲା । ହେଷ୍ଟିଂସ୍‌ଙ୍କ ଦୁର୍ନୀତି ବର୍ଣ୍ଣନା କରି ବଙ୍ଗଦେଶର ଜଣେ ସମ୍ଭ୍ରାନ୍ତ ବ୍ୟକ୍ତି, ମହାରାଜା ଉପାଧିଧାର ନନ୍ଦକୁମାର କୋମ୍ପାନିର ସର୍ବୋଚ୍ଚ କମିଟି ପାଖରେ ଦରଖାସ୍ତ କଲେ । ହେଷ୍ଟିଂସ୍‌ଙ୍କ ଚକ୍ରାନ୍ତରେ ନନ୍ଦକୁମାର ସାମାନ୍ୟ ଅଭିଯୋଗରେ ଗିରଫ ହେଲେ ଓ ଫାଶି ପାଇଲେ ।

ସନ୍ୟାସୀ ବିଦ୍ରୋହକୁ ସୁଦକ୍ଷ ନେତୃତ୍ୱ ଦେଉଥିଲେ ଭବାନୀ ପାଠକ ଏବଂ ଦେବୀ ଚୌଧୁରାଣୀ । ଦେବୀ ଚୌଧୁରାଣୀଙ୍କ ଜୀବନ ରହସ୍ୟାବୃତ । ସେ ମୁଖ୍ୟତଃ ଗୋଟାଏ ବଡ଼ ନୌକାରେ ରହୁଥିଲେ । ତାଙ୍କ ନୌକାକୁ ଘେରି ରହୁଥିଲା ଅନେକ ଗୁଡ଼ାଏ ସଶସ୍ତ୍ର ଦେହରକ୍ଷୀ-ଭର୍ତ୍ତି ଛୋଟ ଛୋଟ ନୌକା । ସେ ଥିଲେ ଅତ୍ୟନ୍ତ ବୁଦ୍ଧିମତୀ ଏବଂ ସାହସୀ ।






ଦେବୀ ଚୌଧୁରାଣୀଙ୍କ ଲୋକେ ବେଳ ଉର୍ଣ୍ଣି କୋମ୍ପାନୀର ଜାହାଜକୁ ଘେରି ଯାଉଥିଲେ । ଜାହାଜ ଲୁଣ୍ଠନ କରି ସେମାନେ ନିଜ ନିଜର ଛୋଟ ଛୋଟ ନୌକାରେ ଏତେ କ୍ଷିପ୍ର ଗତିରେ ଅଦୃଶ୍ୟ ହୋଇ ଯାଉଥିଲେ ଯେ ସେମାନଙ୍କୁ ଠାବ କରିବା ଅସମ୍ଭବ ହେଉଥିଲା । ବଙ୍ଗଦେଶ ଓ ପୂର୍ବ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ଏହା ଘଟୁଥିଲା ।

ଏହା ପରେ ପରେ ପୂର୍ବ ଓ ମଧ୍ୟ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ କୃଷକ ବିଦ୍ରୋହ ଦେଖାଦେଲା । ବନ୍ଧୁକ ଦ୍ୱାରା କୋମ୍ପାନୀ ନିର୍ମମ ଭାବରେ ସେସବୁ ବିଦ୍ରୋହ ଦମନ କଲା । ଶହ ଶହ ଲୋକ ପ୍ରାଣ ଦେଲେ । ଲୋକଙ୍କୁ ଭୟଭୀତ କରି କୋମ୍ପାନୀ ଗାଁ ଗଣ୍ଡା ଭିତରକୁ ତା ଶାସନ ବିସ୍ତାର କଲା ।





କିନ୍ତୁ କୋମ୍ପାନି ନିଜ ଶାସନ ଓ ଶୋଷଣ ଯେ ସୁରୁଖୁରୁରେ ଚଳାଇ ପାରୁଥିଲା, ତାହା ନୁହେଁ । ଏଠାରେ କିଟୁର ରାଜ୍ୟର ଉଦାହରଣ ଦିଆଯାଉ । କର୍ଣ୍ଣାଟକ ଅନ୍ତର୍ଗତ ଏହି ରାଜ୍ୟର ରାଜା ପ୍ରାଣତ୍ୟାଗ କରନ୍ତେ ଦୁଇ ଶିଶୁ ପୁତ୍ରଙ୍କ ତରଫରୁ ରାଣୀ ଚନ୍ନାମ୍ମା ସଗୌରବ ରୂପେ ରାଜ୍ୟ ଶାସନ କଲେ ।

ଦୁର୍ଭାଗ୍ୟକୁ ଉଭୟ ରାଜପୁତ୍ର ଅକାଳ ମୃତ୍ୟୁ ବରଣ କଲେ । ବଡ଼ ରାଜପୁତ୍ର ଗୋଟିଏ ପୋଷ୍ୟପୁତ୍ର ଗ୍ରହଣ କରିଥିବା ସତ୍ତ୍ୱେ କୋମ୍ପାନି କିଟୁର ରାଜ୍ୟକୁ ଉତ୍ତରାଧିକାରୀ-ଶୂନ୍ୟ ବୋଲି ଘୋଷଣା କରି ନିଜ ହାତକୁ ନେଇଯିବାକୁ ଉଦ୍ୟମ କଲା । ରାଣୀ ଚନ୍ନାମ୍ମା କୋମ୍ପାନିର ଏ ଅନ୍ୟାୟ ଆଗରେ ମୁଣ୍ଡ ତଳକୁ ନକରି ନିଜ ନେତୃତ୍ୱରେ ସୈନ୍ୟ-ବାହିନୀକୁ ପ୍ରସ୍ତୁତ କଲେ ।





୧୮୨୪ରେ କୋମ୍ପାନି କିଟୁର ଦୁର୍ଗ ଆକ୍ରମଣ କଲା । ରାଣୀଙ୍କ ନିର୍ଦ୍ଦେଶରେ ତାଙ୍କ ସୈନ୍ୟମାନେ କମାଣ ଫୁଟାଇ ଇଂରେଜ ସେନାପତି ଓ କୋମ୍ପାନିର ପ୍ରତିନିଧିଙ୍କୁ ମାରିଦେଲେ । କୋମ୍ପାନି ପର୍ଯ୍ୟସ୍ତ ହେଲା । କୋମ୍ପାନି ଗୋଟାଏ ବିରାଟ ସୈନ୍ୟଦଳ ଧରି ପୁଣି ଆସି ରାଣୀଙ୍କୁ ପରାସ୍ତ କରି ବନ୍ଦୀ କଲା, କିନ୍ତୁ ରାଣୀଙ୍କ ବୀରତ୍ୱ ଏକ ଉଜ୍ଜ୍ୱଳ ଉଦାହରଣ ହୋଇ ରହିଲା ।



# ତିନି ବରଦାନ

ଏହା ରୁଦ୍ରପୁର ଗାଁର କଥା । ଗୋବିନ୍ଦ ଓ ତା ସ୍ତ୍ରୀ ପୂର୍ଣ୍ଣିମା ଗାଁର ଗୋଟିଏ କଡ଼ରେ ସେମାନଙ୍କ ଛୋଟିଆ ଘରେ ରହୁଥାନ୍ତି । ଘର ଓ ତା' ପାଖରେ ଥିବା ଖଣ୍ଡିଏ ଜମି ଛଡ଼ା ସମ୍ପତ୍ତି ବୋଇଲେ ସେମାନଙ୍କର ଥିଲେ ଦୁଇଟି ଗାଈ । ସେମାନେ ବହୁତ ଦୁଧ ଦେଉଥାନ୍ତି । ସେଥିରୁ ଭଲ ଆୟ ହେଉଥାଏ । ଅବଶ୍ୟ ଗୋବିନ୍ଦ ଓ ପୂର୍ଣ୍ଣିମା ଗାଈ ଦୁଇଟିଙ୍କର ବହୁତ ଯତ୍ନ ନେଉଥାନ୍ତି ।

ଗୋବିନ୍ଦ ଓ ପୂର୍ଣ୍ଣିମା କେବେ କାହାରି ବିରୁଦ୍ଧରେ କିଛି ଅଭିଯୋଗ କରିବାର ଶୁଣା ନଥିଲା । ସେମାନଙ୍କର ବି କେହି ଶତ୍ରୁ ନଥିଲେ ।

ଗାଁ ବାହାରେ ଗୋଟିଏ କୁଡ଼ିଆରେ ଜଣେ ସାଧୁ ରହୁଥାନ୍ତି । ସେ କାହାରି ସହିତ ମିଶାମିଶି କରୁ ନଥିଲେ କି ଅତ୍ୟନ୍ତ ପ୍ରୟୋଜନ ନ ହେଲେ କଥା ବି କହୁ ନଥିଲେ । ଗୋବିନ୍ଦ ସବୁଦିନେ ପଡ଼ିଆକୁ ଗାଈ ନେଇଗଲାବେଳେ ସାଧୁଙ୍କୁ ଦେଖୁଥାଏ ।

ସାଧୁ ମଧ୍ୟ ତାକୁ ମଧ୍ୟେ ମଧ୍ୟେ ଅନାଉଥାନ୍ତି, କିନ୍ତୁ ଦୁହିଁଙ୍କ ଭିତରେ କେବେ କୌଣସି କଥାବାର୍ତ୍ତା ହୋଇ ନ ଥିଲା । ଅବଶ୍ୟ ସାଧୁଙ୍କ ପ୍ରତି ମନେ ମନେ ଗୋବିନ୍ଦ ଶ୍ରଦ୍ଧା ପୋଷଣ କରୁଥାଏ । ସାଧୁଙ୍କ ସୌମ୍ୟ ଚେହେରାରେ ସତେ ଅବା ଦୟା ଓ କରୁଣାର ଛାପ ମୁଦ୍ରିତ ରହିଥାଏ ।

ଦିନେ ଗୋବିନ୍ଦ ପଡ଼ିଆରେ ଅଛି, ହଠାତ୍ ପ୍ରବଳ ଝଡ଼ ଆସିଲା । ସେ ଗାଈ ଦୁଇଟିକୁ ଧରି ଗୋଟିଏ ବିରାଟ ଗଛ ତଳେ ବିଶ୍ରାମ ନେଲା । ଅନେକ ସମୟ ପରେ ବର୍ଷା ଛାଡ଼ିଗଲା । ତାହା ପରେ ଧିରେ ଧିରେ ପବନର ଗତି ମଧ୍ୟ କମି କମି ଆସିଲା । ସେ

କୁମାରୀ ସବିତା



ଗାଈ ଦୁଇଟିକୁ ଧରି ଘରକୁ ଫେରିବାକୁ ଲାଗିଲା । ସାଧୁଙ୍କ କୁଡ଼ିଆ ଆଡ଼େ ଅନାଇ ଦେଖିଲା, ସାଧୁ ନାହାନ୍ତି । ଅଳ୍ପ ଦୂରରେ ଥିବା ଗୋଟାଏ ବରଗଛ ମୂଳକୁ ତା' ଆଖି ଗଲା । ଦେଖିଲା, ସାଧୁଙ୍କ ଉପରେ ଗୋଟାଏ ପ୍ରକାଣ୍ଡ ଡାଳ ଭାଙ୍ଗି ପଡ଼ିଛି । ସାଧୁ ବୋଧହୁଏ ଅଚେତ ହୋଇ ଯାଇଛନ୍ତି ।

ଗୋବିନ୍ଦ ଗାଈ ଦୁଇଟିକୁ ସେମିତି ଛାଡ଼ି-ଦେଇ ସଙ୍ଗେ ସଙ୍ଗେ ଡାଳ ଉଠାଇ ସାଧୁଙ୍କୁ ଦୁଇ ବାହୁରେ ଟେକି ତାଙ୍କ କୁଡ଼ିଆ ଭିତରକୁ ନେଇଗଲା । ସେତେବେଳେ ଯାଇ ସାଧୁ ଆଖି ଖୋଲିଲେ ଓ ପଚାରିଲେ, "ତମେ କିଏ ? କଥା କ'ଣ ?"

"ଆଜ୍ଞା, ମୁଁ ଗୋବିନ୍ଦ । ଏଇ ଗାଁର ଜଣେ ଗରିବ ଲୋକ । ଆପଣ ମୋତେ କେତେଥର ଦେଖିଥିବେ । ସବୁଦିନେ ମୋ ଗାଈ ଦୁଇଟିକୁ ଧରି ଏକାଠେ ପଡ଼ିଆକୁ ଯାଏଁ ।" ଗୋବିନ୍ଦ ଉତ୍ତର ଦେଲା ।

"ବୁଝିଲି । ବୁଝିଲି । କିନ୍ତୁ ଏଠାରେ କ'ଣ କରୁଛ ?" ସାଧୁ ପୁଣି ପଚାରିଲେ ।

ଗୋବିନ୍ଦ ବୁଝିଲା, ସାଧୁ ଧ୍ୟାନସ୍ଥ ଥାଇ କିଛି ଜାଣିନାହାନ୍ତି । ସେ ତାଙ୍କୁ ସବୁ କହିଲା । ସାଧୁ ପ୍ରସନ୍ନ ହୋଇ କହିଲେ, "ତମେ ବହୁତ ଭଲ ମଣିଷ । ତମକୁ ତିନୋଟି ବର ଦେବାକୁ ମନ ହେଉଛି । କ'ଣ ମାଗିବ ମାଗ ।"

ଗୋବିନ୍ଦ ଟିକିଏ ନୀରବ ରହି କହିଲା, "ମହାତ୍ମା ! ମୁଁ ଘରକୁ ଯାଇ ମୋ ସ୍ତ୍ରୀ ସହ ପରାମର୍ଶ କରି ଆସୁଛି ।"

"ଭଲ କଥା । ପୁଣି ଆସିବା ଦରକାର ନାହିଁ । ସ୍ତ୍ରୀ ସହ ପରାମର୍ଶ କରି ଯାହା ମାଗିବା କଥା ସେଇଠି ଭଗବାନଙ୍କୁ ସ୍ମରଣ କରି ମାଗିବ । ମିଳିଯିବ ।" ସାଧୁ କହିଲେ ।

ଗୋବିନ୍ଦ ଖୁସି ହୋଇ ଚାଲିଗଲା ଓ ଘରେ ପହଞ୍ଚି ପୂର୍ଣ୍ଣିମାକୁ ସବୁ କହିଲା ।

ପୂର୍ଣ୍ଣିମା କହିଲା, "ଆମେ ତ ବେଶ୍ ଭଲରେ ରହିଛୁଁ । ଆମର କ'ଣ ଦରକାର ଯେ ଆମେ ବର ମାଗିବୁଁ ? କିନ୍ତୁ ସାଧୁଙ୍କ ନିର୍ଦ୍ଦେଶ ଅମାନ୍ୟ କରିବା ଉଚିତ ନୁହେଁ ।

ଦେଶ୍ । ଗୋଟିଏ ଲଠି, ଗୋଟିଏ ଝାଡୁ ଓ ଖଣ୍ଡିଏ ଦଉଡ଼ି ମାଗ ।"

ଗୋବିନ୍ଦ ଆଖି ବୁଜି ଭଗବାନଙ୍କୁ ସ୍ମରଣ କରି ତାହାହିଁ ମାଗିଲା । କହୁଁ କହୁଁ ସେ ତିନୋଟି ଚିଜ ଆସି ସେମାନଙ୍କ ଆଗରେ ପହଞ୍ଚିଗଲେ । ପୂର୍ଣ୍ଣିମା ଲଠି ଖଣ୍ଡିକ ଗୋବିନ୍ଦକୁ ଦେଲା । ଦଉଡ଼ିଟି ଦୁଇଖଣ୍ଡ କରି ଦୁଇ ଗାଈଙ୍କୁ ବାନ୍ଧିଲା ଏବଂ ଝାଡୁରେ ଘର ସଫା କଲା ।

ପରଦିନ ଗୋବିନ୍ଦ ପଡ଼ିଆ ଭିତରକୁ ଗଲାବେଳେ ସାଧୁ ତାଙ୍କ କୁଡ଼ିଆ ଭିତରେ ବସିଥିବାର ଦେଖି ତାଙ୍କୁ ଜୁହାର କଲା । ସାଧୁ ତାକୁ ପାଖକୁ ଡାକି ପଚାରିଲେ, "କି ବର ମାଗିଲ ?"

"ମହାତ୍ମା! ଖଣ୍ଡିଏ ଲଠି, ଝାଡୁଟିଏ ଓ ଖଣ୍ଡିଏ ଦଉଡ଼ି । ସଙ୍ଗେ ସଙ୍ଗେ ମିଳି ଯାଇଛି ।" ଗୋବିନ୍ଦ ଉତ୍ତର ଦେଲା ।

ସାଧୁ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଯିଏ କି କଥା ? ମୋ ତପଃଶକ୍ତି ବ୍ୟୟ କରି ମୁଁ ତମକୁ ବର ଦେଲି । ତମେ ଏଇ ସାମାନ୍ୟ ଚିଜରେ ସେ ଶକ୍ତି ଉଡ଼ାଇ ଦେଲ ?"

ଗୋବିନ୍ଦ ନମ୍ର ଭାବରେ କହିଲା, "ମହାତ୍ମା! ମୁଁ ଏତେ କଥା ଭାବି ନାହିଁ । ମୋ ସ୍ତ୍ରୀ ପୂର୍ଣ୍ଣିମାର ପରାମର୍ଶ ଅନୁସାରେ କାମ କରିଛି ।"

ସାଧୁ ନୀରବରେ କ'ଣ ଭାବିଲେ । ଗୋବିନ୍ଦ ଟିକିଏ ଇତସ୍ତତଃ କରି ପଚାରିଲା, "ମହାଭାଗ ! ମୁଁ କ'ଣ କିଛି ଭୁଲ୍ କଲି ବୋଲି ଭାବୁଛନ୍ତି ?



ମୋ ମନରେ କିନ୍ତୁ କୌଣସି ଅସନ୍ତୋଷ ନାହିଁ । ତଥାପି ଯଦି ମୋର ବା ପୂର୍ଣ୍ଣିମାର ଭୁଲ ହୋଇଥିବ, ତେବେ କ୍ଷମା କରନ୍ତୁ । ଆପଣ ମହତ୍ ବୋଲି ବରଦାନ ଦେଲେ । ଆମେ ଯଦି ଭାଗ୍ୟହୀନ ହୋଇଥିବୁଁ, ତେବେ ଆପଣ କ'ଣ କରିବେ ?"

ସାଧୁ ଅଳ୍ପ ସମୟ ଚୁପ୍ ରହି କହିଲେ, "ଆଚ୍ଛା, ତମେ ଘରକୁ ଯିବାବେଳକୁ ମୋତେ ଡାକନେବ ।"

ଯଥା ସମୟରେ ଗୋବିନ୍ଦ ସହ ସାଧୁ ଯାଇ ପୂର୍ଣ୍ଣିମାକୁ ଭେଟିଲେ । ପୂର୍ଣ୍ଣିମା ପ୍ରଣାମ କରି ସାରିବା ପରେ ସାଧୁ ପଚାରିଲେ, "ଝିଅ! ମୋ ତପଃଶକ୍ତି ଦେଇ ମୁଁ ଯେଉଁ ବର ଦେଲି, ସେଥିରେ ତୁ ଧନସମ୍ପଦ ନ ଚାହିଁଲୁ କାହିଁକି ?"

"ମହାତ୍ମା! ବର ଦ୍ୱାରା ଆପଣ ଆମର ମଙ୍ଗଳ କରିବାକୁ ଚାହୁଁଥିଲେ, ଅମଙ୍ଗଳ କରିବାକୁ ତ ନୁହେଁ! ଧନସମ୍ପଦ ପାଇଥିଲେ କ'ଣ ହୋଇଥାନ୍ତା ? କାଲିଠାରୁ ଆମେ କାମଦାମ ନକରି ଆରାମ କରନ୍ତୁ । ଆରାମରୁ ଆସନ୍ତା ଭୋଗ ବିଳାସ । ଚେତନାରେ ପାପ ପଶନ୍ତା । କିନ୍ତୁ ଆମେ ଯାହା ପାଇଛୁଁ, ତାହା କ'ଣ କମ ଟଜ ? ଆପଣଙ୍କ ତପଃଶକ୍ତିରୁ ଯେଉଁ ଲାଠି ଆସିଛି, ତାହା ଆମକୁ ଶକ୍ତି ଦେବ ଓ ସବୁ ବିପଦରୁ ରକ୍ଷା କରିବ । ସେହିପରି ଏ ଝାଡୁ ଖାଲି ମଇଳା ଦୂର କରିବ, ତାହା ନୁହେଁ, ଘରକୁ ପବିତ୍ର ରଖିବ । ଆପଣଙ୍କ ବରରୁ ମିଳିଥିବା ଦଉଡ଼ିରେ ଆମ ଗୋ ସମ୍ପଦ ବନ୍ଧାହେବା ଅର୍ଥ ଐଶ୍ୱର୍ଯ୍ୟ ଆମ ସହ ବନ୍ଧା ହୋଇ ରହିଲା । ଆମର କେବେ ଅଭାବ ହେବ ନାହିଁ ।" ପୂର୍ଣ୍ଣିମା କହିଲା ।

ସାଧୁ ହସି ହସି କହିଲେ, "ଝିଅ! ମୋ ଅନୁମାନ ଠିକ୍ । ମୁଁ ଜାଣିଥିଲି, ମୁଁ କୌଣସି ମହତ୍ ମହିଳାକୁ ଭେଟିବାକୁ ଆସୁଛି । ଦୀର୍ଘଜୀବୀ ହୁଅ ।"

ପୂର୍ଣ୍ଣିମା ଓ ଗୋବିନ୍ଦ ପୁଣି ସାଧୁଙ୍କୁ ପ୍ରଣାମ କଲେ । ସେ ବିଦାୟ ନେଲେ ।






# ପଶ୍ଚିମରେ ସୂର୍ଯ୍ୟୋଦୟ !

ଚନ୍ଦନ ଦେଶର ପରମ୍ପରା ଥିଲା ଯେ ରାଜ୍ୟାଭିଷେକ ପୂର୍ବରୁ ଯୁବରାଜ ଦେଶ ପର୍ଯ୍ୟଟନ କରିବେ । ସେଇ ନିୟମ ଅନୁସାରେ ଯୁବରାଜ ପ୍ରତାପ ବର୍ମା ଦେଶାଟନ କରିବା ଅବସ୍ଥାରେ ଯେତେବେଳେ ଗୋଟିଏ ଗ୍ରାମର ସୀମାରେ ପହଞ୍ଚିଲେ ହଠାତ୍ ତାଙ୍କ ପାଦରେ ଗୋଟାଏ ବଡ଼ କଣ୍ଟା ଫୁଟିଗଲା । ରକ୍ତ ବୋହିବାକୁ ଲାଗିଲା । ଯନ୍ତ୍ରଣାରେ ଛଟପଟ ହୋଇ ଯୁବରାଜ ପାଦଟିକୁ ଧରି ସେଇଠି ବସି ପଡ଼ିଲେ । ନିରୁପାୟ ହୋଇ ସେ ସେଇ ନିର୍ଜନ ସ୍ଥାନରେ ଚାରିଆଡ଼େ ଚାହିଁ ଦେଖିଲେ କେହି ଯଦି ଆସି ତାଙ୍କୁ ସାହାଯ୍ୟ କରେ ।

ଠିକ୍ ସେଇ ସମୟରେ ଲଳିତା ନାମରେ ଚଷା ଘରର ଝିଅଟିଏ ଯାଉ ଯାଉ ତାଙ୍କର ଏପରି ଅବସ୍ଥା ଦେଖି ସେଠାକୁ ଆସି କଣ୍ଟାଟିଏ ଧରି ତାଙ୍କ କଣ୍ଟା ବାହାର କରିଦେଲା ଓ ନିଜ ଶାଢ଼ୀରୁ ଖଣ୍ଡେ ଛିଣ୍ଡାଇ କ୍ଷତସ୍ଥାନରେ ପଟି ବାନ୍ଧି ଦେଲା । ଯୁବରାଜ ଝିଅଟିକୁ କୃତଜ୍ଞତା ଜଣାଇ କହିଲେ, "ତମେ ମୋତେ ଆଜି ଯେଉଁ ସାହାଯ୍ୟ କରିଛ ତାହା ମୁଁ ଆଜୀବନ ମନେ ରଖିବି । ତମେ ମୋ ପାଖରୁ ଯଦି କିଛି ଚାହିଁ ମାଗ, ମୁଁ ପାରିଲେ ଦେବି ।"

ଲଳିତା ପରିହାସପୂର୍ବକ କହିଲା, "ପ୍ରଥମେ ତମେ ନିଜ ପାଦରୁ କଣ୍ଟା କାଢ଼ିବା ଶିଖ । ଯିଏ ଏତିକ ଟିକିଏ କାମ ଶିଖି ନାହିଁ ସେ ଅନ୍ୟକୁ କପରି ସାହାଯ୍ୟ କରିବ ?"

ଯୁବରାଜ ହସି ହସି କହିଲେ, "ଆଜି ପର୍ଯ୍ୟନ୍ତ ଏସବୁ କାମ ଶିଖିବାର ଆବଶ୍ୟକତା ମୋର ହୋଇନାହିଁ । କେହି ନା କେହି ମୋର ସେବା କରିବାକୁ ଥା'ନ୍ତି । ଯାହାହେଉ ଏଥର ନିଜେ ଶିଖି ଶିଖି ତମେ ତ ପହଞ୍ଚି ଗଲ ।"

ରଘୁନାଥ



"ତମେ ଯିମିତି କଥାସବୁ କହିଲ ଲାଗୁଛି ସତେ ଅବା ତମେ ଏ ଦେଶର ରାଜା ! କୁହ ତ ମୋତେ ତମେ ରାଣୀ କରିଦେଇ ପାରିବ ?" ଥଟ୍ଟା କରି ଲଳିତା କହିଲା ।

ଏ ପ୍ରଶ୍ନ ଶୁଣି ଯୁବରାଜ ଲଳିତାକୁ ଭଲକରି ମନ ଦେଇ ଦେଖିଲେ । ତା'ର ସୌନ୍ଦର୍ଯ୍ୟରେ ଯୁବରାଜ ବହୁତ ପ୍ରଭାବିତ ହେଲେ । ସେ କହିଲେ, "ଯଦି ପ୍ରକୃତରେ ଏ ଦେଶର ରାଣୀ ହେବାର ଇଚ୍ଛା ତୁମ ମନରେ ଥାଏ ତେବେ ତ ତମେ ଠିକ୍ ଲୋକ ପାଖରେହିଁ ତୁମର ଇଚ୍ଛା ପ୍ରକାଶ କରିଛ । ମୁଁ ରାଜା ନୁହେଁ କିନ୍ତୁ ରାଜା ହେବାକୁ ଯାଉଛି ନିକଟ ଭବିଷ୍ୟତରେ । ମୋ ନାମ ପ୍ରତାପ ବର୍ମା । ଦେଶାଟନ ପାଇଁ ମୁଁ ରାଜ୍ୟରୁ ବାହାରି ଏଠାରେ ପହଞ୍ଚିଛି । ଏପର୍ଯ୍ୟନ୍ତ ତୁମ ପରି ରୂପବତୀ କନ୍ୟା ମୋ ଦୃଷ୍ଟିରେ ପଡ଼ିନାହାନ୍ତି । ମୁଁ ନିଶ୍ଚୟ ତୁମକୁହିଁ ରାଣୀ କରିବି ।"

ଯୁବରାଜଙ୍କ କଥା ଶୁଣି ଲଳିତା ବିଚଳିତ ବା ଆଶ୍ଚର୍ଯ୍ୟ ନ ହୋଇ ଆହୁରି ଦୃଢ଼ଭାବରେ କହିଲା, "ସୁନ୍ଦରୀ ଯୁବତୀଙ୍କୁ ଦେଖିଲେହିଁ ମଣିଷ ମନରେ ଅନେକ ମିଥ୍ୟା କଥା କହିବାର ଇଚ୍ଛା ସୃଷ୍ଟି ହୋଇଥାଏ । ତମେ ଯଦି ସତରେ ରାଜା ତେବେ ମୁଁ ଜାଣି ପାରିବି ।"

"କିମିତି ?" ଯୁବରାଜ ପଚାରିଲେ ।

ତମେ ଯଦି ସତରେ ରାଜା ଓ ମୋତେ ବିବାହ କରିବାକୁ ଚାହଁ ତେବେ ତୁମକୁ ଦୁଇଟି କାର୍ଯ୍ୟ କରିବାକୁ ପଡ଼ିବ । ପ୍ରଥମ କାମ ସୂର୍ଯ୍ୟ ପଶ୍ଚିମରେ ଉଦୟ ହେବେ । ଦ୍ୱିତୀୟରେ ଗଙ୍ଗାନଦୀ ଆମ ରାଜ୍ୟରେ ପ୍ରବାହିତ ହେବ ।"

ଲଳିତାର କଥା ଶୁଣି ତାଙ୍କ ମୁହଁ ଫିକା ପଡ଼ିଗଲା । ଟିକିଏ ରହି ସେ କହିଲେ, "ଏ କାମ କୌଣସିମତେ ବି ସମ୍ଭବ ନୁହେଁ । ତମେ ଖାଲି ଥଟ୍ଟା ମଜା କରୁଛ ।"

"ଆରେ ମୁଁ ଥଟ୍ଟା କରୁନାହିଁ । କଥା

କ'ଣ କି ଅଧିକାର ଓ ଶକ୍ତିଥିବା ଲୋକ ପକ୍ଷରେ କୌଣସି କାର୍ଯ୍ୟ ଅସମ୍ଭବ ନୁହେଁ ।" ଲଳିତା କହିଲା ।

ଯୁବରାଜ କହିଲେ, "ମୋତେ ମାସେ ସମୟ ଦିଅ । ମୁଁ ତୁମ ସର୍ତ୍ତ ପୂରଣ କରିବି ।" ଲଳିତା ରାଜି ହେଲା ।

ଯୁବରାଜ ରାଜଧାନୀକୁ ଲେଉଟିଯାଇ ମନ୍ତ୍ରୀମାନଙ୍କୁ ଡାକି ଦୁଇଟି କଥାର ପ୍ରସ୍ତାବ ଦେଇ କହିଲେ "ଏଥିପାଇଁ କ'ଣ କରିବାକୁ ହେବ ସମସ୍ତେ କିଛି ନା କିଛି ଉପାୟ ଚିନ୍ତା କର ।"

ଏପରି ଅଜବ ପ୍ରସ୍ତାବ ଶୁଣି ମନ୍ତ୍ରୀମାନେ ଘାବଡ଼େଇ ଗଲେ ଓ କହିଲେ, "ଯୁବରାଜ, ଦେଶାଟନ ସମୟରେ ଆପଣଙ୍କ ଉପରେ କେହି ଏପରି ପ୍ରଭାବ ପକାଇ ଏଇ ଅସମ୍ଭବ କଥା ସମ୍ଭବ କରିବା ପାଇଁ କହୁଛି । ଏସବୁର କିଛି ମାନେ ନାହିଁ ।"

"ଏପରି ପରିସ୍ଥିତିରେ ରାଜାର ଅଧିକାରର କୌଣସି ମୂଲ୍ୟନାହିଁ । ତେଣୁ ମୁଁ ଏ ରାଜ୍ୟର ଦାୟିତ୍ୱ ମଧ୍ୟ ନିଜେ ନେଇ ପାରିବି ନାହିଁ । ମୁଁ ମଧ୍ୟ ଜଣେ ସାଧାରଣ ନାଗରିକ ରୂପେ ଏଠାରେ ରହିବି ।" ଯୁବରାଜ କହିଲେ ।

ଏକଥା ମହାରାଜାଙ୍କ କାନକୁ ଗଲା । ସେ ଯୁବରାଜଙ୍କୁ ପାଖକୁ ଡାକି କହିଲେ, "ତମେ ଏସବୁ ଯେଉଁ କଥା କହୁଛ ତାହା ଅସମ୍ଭବ । ରାଜ୍ୟଶାସନ ଦାୟିତ୍ୱରୁ ମୁକ୍ତି ପାଇବାକୁ ତମେ ବୋଧେ ଗୁଲ୍ ଖେଳୁଛ ।"





ଏକଥା ଶୁଣି ପ୍ରତାପ ବର୍ମା ଲଳିତା ସମ୍ବନ୍ଧରେ ଘଟିଥିବା ଘଟଣା ଓ ବାର୍ତ୍ତାଳାପ ସବୁ ମହାରାଜାଙ୍କୁ ଶୁଣାଇଲେ । ମହାରାଜା କହିଲେ, "ତମେ ରାଜା ହେବାକୁ ଯାଉଛ; ସେତେବେଳେ ଏକ ମୂର୍ଖ ଗାଉଁଲି ଝିଅ କଥାକୁ ଏତେ ମୂଲ୍ୟ ଦେବାଟା ଆଦୌ ଉଚିତ ନୁହେଁ ।"

"ସେ ଝିଅ ମୂର୍ଖ, ଗାଉଁଲି, ସାଧାରଣ ଝିଅ ନୁହେଁ ।" ଯୁବରାଜ କହିଲେ ।

"ଆଚ୍ଛା, ପରୀକ୍ଷା କରି ଦେଖିବା । ମୁଁ ସେ ଝିଅକୁ ରାଜନବରକୁ ଡକାଉଛି ।" ମହାରାଜା କହିଲେ ।

ରାଜାଙ୍କ ଆଦେଶରେ କେତେକ ଲୋକ ଯାଇ ଗ୍ରାମରୁ ସେ ଝିଅକୁ ନେଇ ଆସିଲେ । ମହାରାଜା ସ୍ନେହସହକାରେ ତାକୁ ଅନେକ ପ୍ରଶ୍ନ କଲେ । ଲଳିତା ଯେତେବେଳେ ଜାଣିଲା ଦେଖିଥିବା ବ୍ୟକ୍ତି ପ୍ରକୃତରେ ରାଜା ହେବାକୁ ଯାଉଛନ୍ତି ସେ ବିନୟ ସହକାରେ କହିଲା, "ଯୁବରାଜ, ଅଜ୍ଞାନବଶତଃ ମୁଁ କିଛି କହିଛି । କୃପାକରି ମୋତେ କ୍ଷମା କରନ୍ତୁ ।"

ଯୁବରାଜ କହିଲେ, "ତମ ଭୁଲ୍ ଏତେ ସହଜରେ କ୍ଷମା କରିବା କଥା ନୁହେଁ । ତମେ ଯେଉଁ ଇଚ୍ଛା ପ୍ରକାଶ କରିଛ ମୁଁ ତାକୁ ପୂରା କରି ନାହିଁ । କିନ୍ତୁ ତମ କଥାର ସତ୍ୟତା ତମେ ଯଦି ପ୍ରମାଣିତ ନ କରିବ ତେବେ ତମକୁ ସେଥିପାଇଁ କଠୋର ଦଣ୍ଡ ଭୋଗିବାକୁ ହେବ ।"

ଲଳିତା ଡରି ନଯାଇ ଗମ୍ଭୀର ହୋଇ କହିଲା, "ମୁଁ ଯାହା କହିଛି ତାହା ସମ୍ଭବ କରାଯାଇ ପାରିବ । କିନ୍ତୁ ସେଥିପାଇଁ ମୋର ରାଜଅଧିକାର ଲୋଡ଼ା ।"

"ମୁଁ ତ ଏବେ କେବଳ ଯୁବ ରାଜ ମାତ୍ର । ତେଣୁ ରାଜ ଅଧିକାର କେବଳ ମୋର ପିତା ଦେଇପାରିବେ ।" ପ୍ରତାପ ବର୍ମା କହିଲେ ।

ମହାରାଜା ଚିନ୍ତା କରି ଦେଖିଲେ ଯେ ଏ ଝିଅ ସାଧାରଣ ଝିଅ ନୁହେଁ । ଅଧିକାର ଦେବା ଅର୍ଥ ତାକୁ ଯୁବରାଣୀ ପଦରେ ବରଣ କରିବାକୁ ହେବ । ତା'ପରେ ଆଉ ଦଣ୍ଡ



ଦିଆଯାଇ ପାରିବ ନାହିଁ । ଠିକଏ ଭାବି ସେ ଲଳିତାକୁ କହିଲେ, "ଶୁଣ, ତୁମକୁ ମାସକ ପାଇଁ ଯୁବରାଣୀ ପଦର ଅଧିକାର ଦେଉଛି । କିନ୍ତୁ ପ୍ରତାପ ବର୍ମା ପ୍ରଧାନସେନାପତି ପଦରେ ରହିବେ । ତମେ ଯଦି ରାଜଦ୍ରୋହ ପାଇଁ କିଛି ଚେଷ୍ଟା କରିବ ତ ରାଜଅଧିକାର ଛଡ଼େଇ ନିଆଯିବ । ଯଦି ତୁମେ ନିଜ କଥାର ସତ୍ୟତା ପ୍ରମାଣିତ କରିବିତ ତେବେତ ତମେ ସତରେ ଏ ଦେଶର ଯୁବରାଣୀ ହେବ ।"

ଲଳିତା ରାଜାଙ୍କ ସର୍ତ୍ତ ମାନିନେଲା । ସେ ଶାସନ କାର୍ଯ୍ୟ ସମ୍ଭାଳିଲା । ପ୍ରତାପ ବର୍ମା ସୈନ୍ୟମାନଙ୍କର ଦାୟିତ୍ୱ ନେଲେ । ଲଳିତା ପ୍ରଜାମାନଙ୍କର କର ସବୁ କମ କରିଦେଲା ଓ ଅନେକ ପ୍ରଜାହିତକର କାର୍ଯ୍ୟସବୁ କଲା । ତେଣୁ ଏକସପ୍ତାହ ମଧ୍ୟରେ ସେ ଅତ୍ୟନ୍ତ ଜନପ୍ରିୟ ଓ ପ୍ରଜାମାନଙ୍କର ଶ୍ରଦ୍ଧା ଓ ଆଦରର ପାତ୍ର ହୋଇ ଉଠିଲା ।

ରାଜ ଅଧିକାର ପାଇବାର କୋଡ଼ିଏ ଦିନ ପରେ ସେ ଦିନେ ମହାରାଜାଙ୍କୁ ଓ ପ୍ରତାପ ବର୍ମାଙ୍କୁ କହିଲା, "ଆଜି ଆପଣମାନେ ମୋ ସହିତ ନଗର ଭ୍ରମଣରେ ଆସନ୍ତୁ । ଇତି-ମଧ୍ୟରେ କ'ଣ କାମ ହୋଇଛି ଆପଣମାନେ ନିଜ ଆଖିରେ ଦେଖିବେ ।"

ତା'ପରେ ସେମାନେ ରାଜପୋଷାକ ବଦଳାଇ ତିନିଜଣଯାକ ସାଧାରଣ ନାଗରିକ ବେଶରେ ନଗରଭ୍ରମଣରେ ବାହାରିଲେ ।

ସୂର୍ଯ୍ୟ ଉଦୟ ହେଉଛନ୍ତି । ରାସ୍ତା ଚାଲୁ ଚାଲୁ କୌଣସି ନାଗରିକକୁ ସେମାନେ ପଚା-ରିଲେ, ସୂର୍ଯ୍ୟ ଉଠୁଥିବା ଏ ଦିଗଟି କ'ଣ ?"

ପଶ୍ଚିମ ଦିଗ—ସେମାନେ ବିନା ଦ୍ୱିଧାରେ କହିଲେ । ତା'ପରେ ସେ ତିନିଜଣ ନଗର ନିକଟରେ ବହିଯାଉଥିବା ତାରିନଦୀ ପାଖରେ ପହଞ୍ଚିଲେ । ସେଠି ଠିଆ ହୋଇଥିବା ଜଣେ ନାଗରିକକୁ ଲଳିତା ପଚାରିଲା "ଭାଇ, ଏ ନଦୀର ନାମ କ'ଣ ?"

"ଏ ତ ଗଙ୍ଗାନଦୀ ।" ସେ ବ୍ୟକ୍ତିଟି କହିଲା । ତା'ପରେ ରାସ୍ତାରେ ଯାଉଥିବା ଅନ୍ୟ କେତେକ ବ୍ୟକ୍ତି ମଧ୍ୟ ସେଇ କଥା

କହିଲେ । ତା'ପରେ ଲଳିତା ବିନୟ ଭାବରେ ନତମସ୍ତକ ହୋଇ ମହାରାଜାଙ୍କୁ କହିଲା, "ମହାରାଜ, ମୁଁ ଯାହା କହିଥିଲି ତାହା ତ ପ୍ରମାଣ ହୋଇଗଲା ।"

"ଏ ତ ବହୁତ ଆଶ୍ଚର୍ଯ୍ୟଜନକ କଥା । ସୂର୍ଯ୍ୟ ଉଠୁଥିବା ଦିଗକୁ ନଗର ସମସ୍ତେ ପଶ୍ଚିମ ଦିଗ ବୋଲି କହୁଛନ୍ତି ଓ ତାରିନଦୀକୁ ଗଙ୍ଗାନଦୀ କହୁଛନ୍ତି ଏହାର ପଛରେ କି ରହସ୍ୟ ଅଛି କୁହ ।" ମହାରାଜା ପଚାରିଲେ ।

"ମହାରାଜ, ମୁଁ ତ ଅନ୍ତପୁରରେ ଜନ୍ମ ହୋଇ ନାହିଁ । ତେଣୁ ପ୍ରଜାଙ୍କର ଦୁଃଖ କଷ୍ଟ ବିଷୟରେ ମୁଁ ବହୁତ କିଛି ଜାଣେ ! ଯୁବରାଣୀ ପଦପ୍ରାପ୍ତି ହୋଇ ମୁଁ ସେମାନଙ୍କ ଦୁଃଖ, ଦାରିଦ୍ର୍ୟ ଦୂର କରିବାକୁ ଚେଷ୍ଟାକରି ହଠାତ୍ ଜନପ୍ରିୟ ହୋଇ ଉଠିଲି । ତେଣୁ ନଗରର ଅଧିକାରୀମାନଙ୍କ ଦ୍ୱାରା ପ୍ରଚାର କରାଇଲି କି ତୁମ ଯୁବରାଣୀଙ୍କର ସ୍ୱାସ୍ଥ୍ୟ ଖରାପ ହେଉଛି । ତମେ ଯଦି ପୂର୍ବକୁ ପଶ୍ଚିମ ଓ ତାରିନଦୀକୁ ଗଙ୍ଗାନଦୀ କହିବ ସେ ଭଲ ହୋଇଯିବେ । ସେକଥା ସେମାନେ ସହଜରେ ମାନିନେଲେ ।" ଲଳିତା କହିଲା । ପ୍ରତାପ ବର୍ମା ହାତତାଳି ଦେଇ କହି ଉଠିଲେ, "ଆଚ୍ଛା, ମୁଁ ଭାବିପାରି ନଥିଲି କି ଏତେ ସହଜରେ ଏ କାମ ହୋଇଯିବ ।"

କିନ୍ତୁ ମହାରାଜା ଗମ୍ଭୀର ହୋଇ ଲଳିତାକୁ କହିଲେ, " ତୁମକୁ ମୁଁ ବୋହୂ କରିବାକୁ ଚାହେଁ । କାରଣ ଏତେ କମ୍ ଦିନରେ ତମେ ଜନତାଙ୍କର ପ୍ରିୟପାତ୍ରୀ ହୋଇ ଉଠିଛ ଓ ତାଙ୍କ ପାଇଁ ଅନେକ ହିତକର କାର୍ଯ୍ୟ କରିଛ । ମୋ ଦେଶର ତମେହିଁ ପ୍ରକୃତରେ ପ୍ରଜାଙ୍କ ପାଇଁ ରାଣୀ ହେବାର ଉପଯୁକ୍ତ ।"

କିଛି ଦିନ ପରେ ପ୍ରତାପ ବର୍ମା ଓ ଲଳିତାଙ୍କର ବିବାହ ମହାସମାରୋହରେ ଅନୁଷ୍ଠିତ ହେଲା । ଶାସନ ଦାୟିତ୍ୱ ଲଳିତାକୁ ଦେଇ ବେଶି ସମୟ ପ୍ରତାପ ବର୍ମା ସୈନ୍ୟ-ବିଭାଗ ଚାଳନାରେ ରହିଲେ । ରାଜକାର୍ଯ୍ୟ ସୁରୁଖୁରୁରେ ଚାଲିଲା । ଉତ୍ତମ ରାଜାରାଣୀ ଭାବରେ ସେମାନଙ୍କର ସୁଖ୍ୟାତି ବ୍ୟାପିଲା ।





# ମେଧାବୀ ଦୂତ

କ୍ରୌଞ୍ଚ ଦ୍ୱୀପର ରାଜା କର୍ମବୀର ନିଜ ରାଜ୍ୟର ନିରାପତ୍ତା ଦୃଷ୍ଟିରୁ ସମସ୍ତ ପଡ଼ୋଶୀ ରାଜ୍ୟ ସହିତ ମିତ୍ରତା ସ୍ଥାପନ କରିଥା'ନ୍ତି । କିନ୍ତୁ ପୁଷ୍କର ଦ୍ୱୀପର ରାଜା ଧର୍ମବୀର ସିଂହଙ୍କ ସହିତ ମିତ୍ରତା ସ୍ଥାପନ ହୋଇ ପାରି ନଥାଏ ।

ଏ ବିଷୟରେ ଚିନ୍ତା କରୁ କରୁ ଦିନେ ରାଜା କର୍ମବୀର ସିଂହ ତାଙ୍କ ମନ୍ତ୍ରୀ ଦୂରଦର୍ଶୀଙ୍କୁ ମିତ୍ରତା ସ୍ଥାପନ ଉଦ୍ଦେଶ୍ୟରେ ପୁଷ୍କର ଦ୍ୱୀପକୁ ପଠାଇଲେ । ଧର୍ମବୀର ସିଂହଙ୍କ ମନରେ ଅହଂକାର ଥାଏ କି ସେ ସବୁଠାରୁ ବୁଦ୍ଧିମାନ୍ ଓ ମେଧାବୀ । ତେଣୁ ସେ ଭାବିଲେ କ୍ରୌଞ୍ଚ ଦ୍ୱୀପର ମନ୍ତ୍ରୀ ଦୂରଦର୍ଶୀଙ୍କୁ ବୁଦ୍ଧିରେ ହରାଇ ଦେଇ ଫେରେଇ ଦେବେ ।

ଦୂରଦର୍ଶୀ ପୁଷ୍କର ଦ୍ୱୀପର ଦୁର୍ଗ ଦ୍ୱାର ନିକଟରେ ପହଞ୍ଚିବା ମାତ୍ରେ ଦୁର୍ଗ ଦ୍ୱାର ସବୁ ବନ୍ଦ କରି ଦିଆଗଲା । ଧର୍ମବୀର ସିଂହ ଉପରେ ବସି ସବୁ ଦେଖୁଥା'ନ୍ତି । ରାଜା ଦେଖୁଛନ୍ତି ଜାଣି ଦୂରଦର୍ଶୀ ତଳରୁ ପ୍ରଣାମ କଲେ । ରାଜା ବ୍ୟଙ୍ଗପୂର୍ବକ ହସି ହସି କହିଲେ, "ମନ୍ତ୍ରୀ, ଦେଖ ତ ଦୁର୍ଗ ଫାଟକ ତ ବନ୍ଦ ଅଛି । ତା' ପାଖରେ ଗୋଟିଏ ଛୋଟିଆ ଦ୍ୱାର ଖୋଲା ଅଛି କୁକୁରମାନଙ୍କର ଯିବା ଆସିବା ପାଇଁ, ତମେ ସେଇବାଟେ ଭିତରେ ପ୍ରବେଶ କରିବାକୁ ଚେଷ୍ଟା କର ।" ଏ କଥାରେ ତାଙ୍କ ପାଖ ଲୋକମାନେ ରାଜାଙ୍କୁ ପ୍ରଶଂସା କରି କହି ଉଠିଲେ, "ବାଃ ବାଃ ।"

ମନ୍ତ୍ରୀ କିନ୍ତୁ ତତ୍‌କ୍ଷଣାତ୍ ତଳୁ ଥାଇ ଜବାବ୍ ଦେଲେ, "ଆଜ୍ଞା, ମହାରାଜ, ଆପଣଙ୍କ ରାଜ୍ୟର ଲୋକଙ୍କ ପାଇଁ ଯଦି ସେ ଦ୍ୱାର ହୋଇଛି ଅର୍ଥାତ୍ ଆପଣଙ୍କ ରାଜ୍ୟରେ ଯଦି କେବଳ କୁକୁରମାନେ ବାସିନ୍ଦା ତେବେ ମୋର ଯିବାରେ କିଛି ଆପତ୍ତି ନାହିଁ ।"

(ପଚିଶ ବର୍ଷ ପୂର୍ବର "ଚନ୍ଦାମାମା"ରୁ ଗୃହୀତ)

ଏପରି ଉତ୍ତର ଶୁଣି ରାଜାଙ୍କ ମୁହଁ ଫିକା ପଡ଼ିଗଲା । ରାଜା ତାଙ୍କୁ ପ୍ରଧାନ ଦ୍ୱାର ଖୋଲି ଭିତରକୁ ଆଣି ପାଖରେ ବସାଇଲେ ।

ଦୂରଦର୍ଶୀ ଦେଖିବାକୁ ଟିକିଏ ଗେଡ଼ା । ରାଜା ପୁଣି ତାଙ୍କୁ ଅପମାନ କରିବାକୁ ଯାଇ କହିଲେ, "ତୁମମାନଙ୍କ ବୁଦ୍ଧି ଯେପରି ସେପରି ତୁମ ଲୋକସବୁ ଗେଡ଼ା ଓ ଗେଣ୍ଠିଆ ?"

ମନ୍ତ୍ରୀ ଚଟାପଟ ଜବାବ ଦେଲେ, "ମହାରାଜ, ଆମ ଦେଶରେ ନାନା ପ୍ରକାରର ଲୋକ ଅଛନ୍ତି । କିନ୍ତୁ ଆମ ରାଜ୍ୟର ନିୟମ ଅନୁସାରେ ନୀଚ ଲୋକଙ୍କ ପାଖକୁ ଗେଡ଼ା ଲୋକଙ୍କୁ ଓ ମହାନ୍ ବ୍ୟକ୍ତିଙ୍କ ପାଖକୁ ଲମ୍ବା ଲୋକଙ୍କୁ ପଠାଯାଏ । ସେଥିପାଇଁ ମୋତେ ଏଠାକୁ ପଠା ହୋଇଛି ।"

ରାଜା ମନେ ମନେ ରାଗି ଯାଉଥା'ନ୍ତି । ଇତିମଧ୍ୟରେ ସିପାହିମାନେ ଗୋଟିଏ ଲୋକକୁ ଧରି ରାଜାଙ୍କୁ କହିଲେ, "ଏ ଲୋକ କ୍ରୌଞ୍ଚ ଦ୍ୱୀପରୁ ଆସି ଆମ ରାଜ୍ୟରେ ଚୋରି କରି ଧରାପଡ଼ିଛି ।" ରାଜା ତତ୍କ୍ଷଣାତ୍ ପଚାରିଲେ, "ମନ୍ତ୍ରୀ ମହାଶୟ, କ'ଣ ତମ ରାଜ୍ୟର ସମସ୍ତେ ଚୋରି କରି ପେଟ ପୋଷନ୍ତି ?"

ମନ୍ତ୍ରୀ ତତ୍ପରତାର ସହିତ ଉତ୍ତର ଦେଲେ, "ମହାରାଜ ! ଚୋରିଟା ସ୍ଥାନର ଗୁଣ । ଏ ଦେଶରେ ପାଦ ରଖିବା ମାତ୍ରେ ମନରେ ଚୋରି କରିବାର ଭାବ ଆସେ । କିନ୍ତୁ ଆମ ଦେଶରେ ଚୋରି କରିବାର ଚିନ୍ତା ମଧ୍ୟ କାହା ମନରେ ନାହିଁ । ଏଇଟା ବୋଧେ ଆପଣଙ୍କ ଦେଶର ଲକ୍ଷଣ !"

ଏ ଉତ୍ତରରେ ରାଜାଙ୍କ ମଥା ଘୁରିଗଲା । ସେ ଭାବିଲେ ଏଠାରେ ଶତ୍ରୁତା କଲେ ସେମାନଙ୍କର ବିଜୟ ଅନିବାର୍ଯ୍ୟ । ତେଣୁ ରାଜା ମନ୍ତ୍ରୀଙ୍କୁ କିଛି ପୁରସ୍କାର ମାଗିବା ପାଇଁ ଅନୁରୋଧ କଲେ । ମନ୍ତ୍ରୀ କହିଲେ, "ମହାରାଜ, ଦୁଇ ରାଜ୍ୟର ମିତ୍ରତାହିଁ ମୋର ସବୁଠାରୁ ମୂଲ୍ୟବାନ୍ ପୁରସ୍କାର ।" ସେହି ସମୟଠାରୁହିଁ ଦୁଇ ରାଜ୍ୟର ମିତ୍ରତା ସ୍ଥାପିତ ହେଲା ।



# ବିଷ୍ଣୁ ପୁରାଣ

ସତ୍ୟଯୁଗ ଓ ତ୍ରେତାଯୁଗ ଶେଷ ହେବା ପରେ ଦ୍ୱାପର ଯୁଗ ଆସିଲା । ସେତେବେଳେ ରାକ୍ଷସମାନେ ମାନବଗଣଙ୍କ ମଧ୍ୟରେ ଅଧିକ ସଂଖ୍ୟାରେ ଜନ୍ମ ନେଲେ ଓ ପୃଥିବୀ ଉପରେ ନାନା ଅତ୍ୟାଚାର ଉପଦ୍ରବ କଲେ । ତେଣୁ ଭୂଦେବୀ ଯାଇ ଶ୍ରୀବିଷ୍ଣୁଙ୍କୁ ପ୍ରାର୍ଥନା କଲେ ଏହାର ଆଶୁ ପ୍ରତିକାର ପାଇଁ ।

ଶ୍ରୀବିଷ୍ଣୁ ଅଭୟ ଦେଇ କହିଲେ, "ତମେ ଚିନ୍ତା କରନାହିଁ । ମୁଁ କୃଷ୍ଣାବତାରରେ ତୁମର ସମସ୍ତ ଦୁଃଖ ଦୂର କରିବି ।"

ବିଷ୍ଣୁଙ୍କର ଶତ୍ରୁ ରାକ୍ଷସ କାଳନେମି କଂସ ରୂପରେ ପୃଥିବୀରେ ଜନ୍ମ ନେଲା । ସେ ଥିଲା ମଥୁରା ନଗରୀର ରାଜା ଉଗ୍ରସେନଙ୍କ ପୁତ୍ର । ଦେବ ଦାନବଙ୍କ ଯୁଦ୍ଧରେ ଦାନବ ନେତା ବିପ୍ରଚିତ୍ତି ଜରାସନ୍ଧ ରୂପେ ଜନ୍ମ ନେଇ ମଗଧର ରାଜା ହୋଇଥାଏ । ସେ କଂସର ଶ୍ୱଶୁର ।

ରାଜା ଉଗ୍ରସେନଙ୍କ ସାନଭାଇର ଝିଅ ଦେବକୀର ବିବାହ ହେଉଥାଏ ରାଜା ବସୁଦେବଙ୍କ ସହିତ । ବିବାହ ପରେ ଭଉଣୀ ଦେବକୀକୁ ଛାଡ଼ିବାକୁ ନିଜେ କଂସ ଯାଉଥାଏ । ଏଇ ସମୟରେ ହଠାତ୍ ଆକାଶବାଣୀ ହେଲା, "ଦେବକୀର ଅଷ୍ଟମ ଗର୍ଭରେ ଜନ୍ମ ହେବା ପୁତ୍ରହିଁ କଂସକୁ ମାରିବ ।"

ଏକଥା ଶୁଣି କଂସ କ୍ରୋଧରେ ଆଖି ଲାଲ କରି ରଥରୁ ଡେଇଁପଡ଼ି ଦେବକୀକୁ ହାଣି ଦେବାକୁ ବାହାରିଲା । କିନ୍ତୁ ବସୁଦେବ କହିଲେ ପିଲା ଜନ୍ମ ଦେବା ମାତ୍ରେ କଂସକୁ ସମର୍ପଣ କରି ଦିଆଯିବ । ତେଣୁ ଅଯଥା




ତାହାଙ୍କ ଦେବକୀଙ୍କୁ ମାରିବ । କଂସ ସେଥିରୁ କ୍ଷାନ୍ତ ହୋଇ ଦୁହିଁଙ୍କୁ ନେଇ ବନ୍ଦୀଶାଳରେ ରଖିଲା ଓ ପିଲା ଜନ୍ମହେବା ମାତ୍ରେ ପଥରରେ ଛେଚି ମାରି ପକାଉଥାଏ । ଏପରି ଛ'ଟି ପୁତ୍ର ମାଇଲା । ତା'ପରେ ଦେବକୀଙ୍କର ପୁଣି ପିଲା ହେବାର ହେଲା । ସେତେବେଳେ ତାଙ୍କ ପେଟରେ ରହିଲେ ଶେଷଦେବଙ୍କ ଅଂଶରୁ ସମ୍ଭୂତ ବଳରାମ । କିନ୍ତୁ ପୃଥିବୀରେ କଂସର ଅତ୍ୟାଚାର ଏତେ ପ୍ରବଳ ହେଲା ଯେ ଭଗବାନ ଯୋଗମାୟାଙ୍କୁ ଆଦେଶ ଦେଲେ ଦେବକୀଙ୍କ ସପ୍ତମ ଗର୍ଭକୁ ନେଇ ବସୁଦେବଙ୍କ ପ୍ରଥମ ପତ୍ନୀ ରୋହିଣୀଙ୍କ ଗର୍ଭରେ ରଖିବାକୁ ଓ ଯୋଗମାୟା ନିଜେ ଯଶୋଦାଙ୍କ ଗର୍ଭରେ ରହିବାକୁ । ସେହିପରି ହେଲ ଏବଂ ସ୍ୱୟଂ ବିଷ୍ଣୁ ଯାଇ ଦେବକୀଙ୍କ ଗର୍ଭରେ ରହିଲେ ।

କାରାଗାର ଭିତରେ ଦେବକୀ ବସୁଦେବ ଥା'ନ୍ତି । ଅଷ୍ଟମ ପିଲ ଜନ୍ମ ହେବାର ସମୟ ଆସିଲା । ଭାଦ୍ରବ ମାସ କୃଷ୍ଣ ଅଷ୍ଟମୀରେ ଚନ୍ଦ୍ରମା ଯେତେବେଳେ ରୋହିଣୀ ନକ୍ଷତ୍ରରେ ପ୍ରବେଶ କରୁଥିଲେ ସେତେବେଳେହିଁ ଭଗବାନ ଶ୍ରୀକୃଷ୍ଣ ମାତା ଦେବକୀଙ୍କ ଗର୍ଭରୁ ଜନ୍ମ ନେଲେ କାରରକ୍ଷୀମାନେ ଘୋର ନିଦ୍ରାରେ ଅଚେତନ । ବାହାରେ ପ୍ରବଳ ବର୍ଷା ।

ଶ୍ରୀବିଷ୍ଣୁଙ୍କ ଆଦେଶରେ ବସୁଦେବ ଶିଶୁ କୃଷ୍ଣଙ୍କୁ ଧରି ଗୋକୁଳ ଗଲେ । ସେଠାରେ ଯଶୋଦାଙ୍କ ଗର୍ଭରୁ ସଦ୍ୟଜାତ ଶିଶୁକନ୍ୟା ସ୍ଥାନରେ ଶିଶୁ କୃଷ୍ଣଙ୍କୁ ଶୁଆଇ ଦେଇ ଶିଶୁ-କନ୍ୟାଟିକୁ ଧରି ଫେରି ଆସିଲେ । ବସୁଦେବ କାରାଗାର ମଧ୍ୟରେ ପ୍ରବେଶ କରୁ କରୁ ଶିଶୁକନ୍ୟା ଚିତ୍କାର କରି କାନ୍ଦିବାକୁ ଲାଗିଲା । ତା'ର କ୍ରନ୍ଦନ ଧ୍ୱନି ଶୁଣି କଂସ ସେଠାକୁ ଆସି ଶିଶୁଟିକୁ ଟେକିନେଇ ଶିଳରେ କଚାଡିଲା । କିନ୍ତୁ ଶିଶୁଟି ଶିଳାରେ ନ ପଡି ଆକାଶ ମାର୍ଗକୁ ଉଡିଗଲା ଓ ଆକାଶରୁ କହିଲା, "ଆରେ ଦୁଷ୍ଟ କଂସ! ତତେ ଯିଏ ମାରିବ ସେ ଗୋପରେ ବଢୁଛି ।"

କଂସ କିଛି କରି ନପାରି ଭୟ ଓ କ୍ରୋଧରେ ଅନ୍ଧ ହୋଇ ଦେବକୀ ଓ ବସୁଦେବଙ୍କୁ ଖୁବ ଅପମାନ କଲା । ଆଗରୁ ତାଙ୍କର ଛ'ଟି ଶିଶୁଙ୍କୁ

ବାଡ଼େଇ ମାରିଥିଲା । ସେମାନଙ୍କର ଦୁଃଖର ଆଉ ସୀମା ନ ଥାଏ । କିନ୍ତୁ ସବୁ ଦୁଃଖ ମଧ୍ୟରେ ଆନନ୍ଦ ହେଲା କୃଷ୍ଣଙ୍କ ସ୍ମୃତି ।



ଗୋପରେ କୃଷ୍ଣଙ୍କ ଜନ୍ମ ଯୋଗୁ ନାନା ଉତ୍ସବ ପାଳନ କରାଗଲା । ଆଗରୁ ରୋହିଣୀଙ୍କ ଗର୍ଭରୁ ବଳରାମ ଜନ୍ମ ନେଇଥା'ନ୍ତି ।

ଦିନେ ନାରଦ ଯାଇ କଂସକୁ ତା'ର ଜନ୍ମ ଚରିତ ଶୁଣାଇ କହିଲେ, "ହେ କଂସ, ତମେ ତ ଉଗ୍ରସେନର ପୁଅ ନୁହଁ, ତୁମେହିଁ କାଳନେମୀ । ତମେ ଜାଣନାହିଁ କି ତମକୁ ସଂହାର କରିବା ପାଇଁ ଭଗବାନ ଅବତାର ନେଇଛନ୍ତି ? ଏବେଠୁ କୌଣସି ପ୍ରତିକାର ନ କଲେ ତୁମର ମୃତ୍ୟୁ ଅନିବାର୍ଯ୍ୟ ।"

ପ୍ରକୃତରେ ଥରେ ଉଗ୍ରସେନଙ୍କ ପତ୍ନୀ ପିତାଙ୍କ ଗୃହକୁ ଯାଇଥା'ନ୍ତି ଓ ଉଗ୍ରସେନଙ୍କ ବିଚ୍ଛେଦରେ ସର୍ବଦା ତାଙ୍କ କଥା ଭାବୁଥା'ନ୍ତି । ଇତିମଧ୍ୟରେ ଗୋଟାଏ ରାକ୍ଷସ ଉଗ୍ରସେନଙ୍କ ରୂପ ନେଇ ସେଠାକୁ ଆସିଲା ଓ କିଛିଦିନ ତାଙ୍କ ସହିତ ରହିଲା । ଫଳସ୍ୱରୂପ କଂସ ଜନ୍ମ ହେଲା । କଂସର ଯୌବନ ପ୍ରାପ୍ତି ହେବା ମାତ୍ରେ ସେ ଉଗ୍ରସେନଙ୍କୁ ବନ୍ଦୀ କରି ନିଜେ ସିଂହାସନରେ ବସିଲା । ଏବେ ନାରଦଙ୍କ କଥାରେ ସେ ଚିନ୍ତିତ ହୋଇ ପଡି ସବୁ ରାକ୍ଷସମାନଙ୍କୁ ସଂଗ୍ରହ କରି ଶିଶୁ ହତ୍ୟା ପାଇଁ ପଠାଇଲା । ଯେତେ ରାକ୍ଷସ ଯେତେ ପ୍ରକାର ମାୟା ରଚନା କଲେ ମଧ୍ୟ କୃଷ୍ଣ ସମସ୍ତଙ୍କୁ ମାରି ଦେଉଥିଲେ । ପୂତନା ରାକ୍ଷସୀଙ୍କୁ କ୍ଷୀର ସହିତ ପ୍ରାଣ ଶୋଷି ନେଇ କୃଷ୍ଣ ମାରିଥିଲେ । ତା'ପରେ ତୃଣାବର୍ତ୍ତ ଶିଶୁ କୃଷ୍ଣଙ୍କୁ ଆକାଶକୁ ଉଡ଼ାଇ ନେଇଗଲା । କିନ୍ତୁ ସେଠାରେ ମଧ୍ୟ କୃଷ୍ଣ ତାକୁ ମାରିଦେଲେ । ପୂର୍ବରୁ ଶକଟାସୁରକୁ ପାଦରେ ଠେଲି ସେ ମାରିଥିଲେ ।

କ୍ରମେ କୃଷ୍ଣ ବଡ଼ ହେଲେ । ବାଳକ କୃଷ୍ଣ ଖୁବ୍ ଦୁଷ୍ଟାମୀ କରୁଥା'ନ୍ତି । ସାଙ୍ଗମାନଙ୍କୁ ଧରି ଲହୁଣୀ ଚୋରି କରି ଖା'ନ୍ତି । କୃଷ୍ଣଙ୍କ ଲୀଳାରେ ଗୋପୀ ଗୋପାଳଙ୍କ ଜୀବନ ମଧୁମୟ ହୋଇ ଉଠିଲା । ଥରେ ବାଳକ କୃଷ୍ଣଙ୍କ ଦୁଷ୍ଟାମିରେ ବିରକ୍ତ ହୋଇ ମାତା ଯଶୋଦା ତାଙ୍କୁ ଗୋଟିଏ କାଠରେ ବାନ୍ଧି



ଦେଇଥିଲେ । କୃଷ୍ଣ ଦୁଇଟି ଗଛ ମଧ୍ୟ ଦେଇ ଗୁରୁଣ୍ଡି ଗୁରୁଣ୍ଡି ଯିବାରୁ ସେଇ କାଠଟି ଲାଗି ଗଛ ଦୁଇଟି ଉପୁଡ଼ି ପଡ଼ିଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଗଛଦୁଇଟି ଥିଲେ ଦୁଇଟି ଅଭିଶପ୍ତ ଗନ୍ଧର୍ବ । ସେମାନେ କୃଷ୍ଣଙ୍କ କୃପାରୁ ନିଜ ରୂପ ଫେରି ପାଇଲେ ଓ ସ୍ୱର୍ଗକୁ ଉଡ଼ି ଚାଲିଗଲେ । ପରେ ବାଳକ କୃଷ୍ଣ ମାଟି ଖାଇବା ବେଳେ ଯଶୋଦା ତାଙ୍କୁ ଗାଳି ଦେବାରୁ ସେ ମାଟି ଖାଇ ନାହାନ୍ତି ବୋଲି ପ୍ରମାଣ କରିବାକୁ ଯାଇ ପାଟି ଆଁ କରି ଦେଖାଇଲେ । ତାଙ୍କର କୁନି ପାଟି ଭିତରେ ଯଶୋଦା ମାଟି ଖୋଜିବାକୁ ଯାଇ ଦେଖିଲେ ବିଶ୍ୱବ୍ରହ୍ମାଣ୍ଡ ଗ୍ରହ, ତାରା, ନକ୍ଷତ୍ର ସବୁ ତା'ର ଭିତରେ । କିଛି ସମୟ ପାଇଁ ସେ ବିମୂଢ଼ ହୋଇଗଲେ । ପରେ ପୁଣି କୃଷ୍ଣଙ୍କ ମାୟା ଯୋଗୁ ତାଙ୍କର ମସ୍ତିଷ୍କ ଚେତନା ଫେରି ଆସିଲା ।

କାଳନ୍ଦୀ ହ୍ରଦରେ ମହାସର୍ପ କାଳୀୟକୁ ଦଳନ କଲେ କୃଷ୍ଣ । ତାହାର ସହସ୍ର ଫଣା ଉପରେ ନାଚିବାକୁ ଲାଗିଲେ । ଗୋକୁଳବାସୀମାନେ ଯେତେବେଳେ ଗୋକୁଳ ଛାଡ଼ି ବୃନ୍ଦାବନରେ ବସତି ସ୍ଥାପନ କଲେ ଓ ଗିରି-ଗୋବର୍ଦ୍ଧନଙ୍କୁ ପୂଜା କଲେ ଇନ୍ଦ୍ର ହଠାତ୍ ରାଗିଯାଇ ପ୍ରବଳ ବର୍ଷା ଓ ଝଡ଼ ସୃଷ୍ଟି କଲେ । ସେତେବେଳେ ଗୋପବାସୀଙ୍କୁ ରକ୍ଷା କରିବାକୁ ଯାଇ କୃଷ୍ଣ ନିଜ ଆଙ୍ଗୁଳିରେ ଗୋବର୍ଦ୍ଧନ ପର୍ବତକୁ ଉଠାଇ ସାତଦିନ କାଳ ଧରି ରଖିଲେ । ଇନ୍ଦ୍ରଙ୍କର ଅହଙ୍କାର ସେ ଏଇପରି ଦମନ କଲେ ।

ବୃନ୍ଦାବନରେ ଗୋପୀ ଓ ଗୋପାଳଙ୍କ ସହିତ କୃଷ୍ଣ ଓ ବଳରାମ ନାନା ଲୀଳାଚରଣା କଲେ । ଅନେକ ରାକ୍ଷସ କଂସ ଦ୍ୱାରା ପ୍ରେରିତ ହୋଇ କୃଷ୍ଣଙ୍କୁ ମାରିବା ପାଇଁ ଆସନ୍ତି; କୃଷ୍ଣ ଓ ବଳରାମ ଦୁହେଁ ସେମାନଙ୍କୁ ମାରି ଦିଅନ୍ତି । ଏଇପରି କିଛିଦିନ ବିତିଗଲା । କ୍ରମେ କଂସର ଭୟ ବଢ଼ିଲା । ସେ ଚାହିଁଲା ଦୁଇଭାଇଙ୍କୁ ଧନୁଯାତ୍ରା ପାଇଁ ମଥୁରାକୁ ନିମନ୍ତ୍ରଣ କରି ଆଣିଲେ ମାରିବା ପାଇଁ ସୁବିଧା ହେବ ।

ଦୁଇ ଭାଇ ଧନୁଯାତ୍ରା ଦେଖିବାକୁ ଆସିଲେ । କଂସ ଯେତେ ପ୍ରକାର ଷଡ଼ଯନ୍ତ୍ର କରିଥିଲା ସବୁ



ବ୍ୟର୍ଥ ହେଲା । ଅବଶେଷରେ ବାଳକ କୃଷ୍ଣ କଂସକୁ ବଧ କଲେ । ତା'ପରେ ମାତା ଦେବକୀ ଓ ପିତା ବସୁଦେବଙ୍କୁ ସେ କାରାମୁକ୍ତ କଲେ । ଉଗ୍ରସେନଙ୍କୁ ରାଜା କଲେ ।

କଂସର ଦୁଇ ବିଧବା ପତ୍ନୀ ପିତୃଗୃହକୁ ଚାଲିଗଲେ । ସେମାନଙ୍କର ପିତା ଜରାସନ୍ଧ ମଥୁରା ଆକ୍ରମଣ କଲା । କୃଷ୍ଣଙ୍କ ସହିତ ଘୋର ଯୁଦ୍ଧ ହେଲା । ଜରାସନ୍ଧ ହାରିଯାଇ ଫେରିଗଲା । ତା'ପରେ କାଳଯବନ ନାମକ ଏକ ରାକ୍ଷସକୁ କୃଷ୍ଣଙ୍କୁ ମାରିବା ପାଇଁ ପଠାଇଲା ।

କୃଷ୍ଣ କାଳଯବନକୁ ନ ମାରି ରଣକ୍ଷେତ୍ର ଛାଡ଼ି ପଳାୟନ କଲେ । କାଳଯବନ ତାଙ୍କ ପଛରେ ଅନୁଧାବନ କଲା । ଯାଇ ଯାଇ କୃଷ୍ଣ ଏକ ଗୁମ୍ଫା ମଧ୍ୟରେ ପ୍ରବେଶ କଲେ । କାଳଯବନ ଗୁମ୍ଫା ମଧ୍ୟରେ ପ୍ରବେଶ କରି ଅନ୍ଧକାରରେ ଗୋଟିଏ ମନୁଷ୍ୟ ମୂର୍ତ୍ତି ଦେଖି ତାକୁ କୃଷ୍ଣ ଭାବି ପଦାଘାତ କରିବାରୁ ସେ ଆଖି ଖୋଲି ଚାହିଁଲେ ଓ କାଳଯବନ ତତ୍‌କ୍ଷଣାତ୍ ଭସ୍ମସାତ୍ ହେଲା । ଯିଏ ଏପରି କଲେ ସେ ଥିଲେ ରାଜର୍ଷି ମୁଚୁକୁନ୍ଦ । ସତ୍ୟ ଯୁଗରୁ ସେ ସେଠାରେ ଥା'ନ୍ତି । ଥରେ ଦେବତା ରାକ୍ଷସ ଯୁଦ୍ଧରେ ସେ ଦେବତାଙ୍କୁ ସାହାଯ୍ୟ କରିଥିଲେ ବୋଲି ଦେବତାମାନେ ବର ଯାଚିଲେ । ସେ କୈବଲ୍ୟ ମୁକ୍ତି ଚାହିଁଲେ । ଦେବତାମାନେ କହିଲେ ସେମାନେ ସେ ବର ଦେଇ ପାରିବେ ନାହିଁ, ଦ୍ୱାପର ଯୁଗରେ କୃଷ୍ଣ ଅବତାର ତାଙ୍କୁ ସେ ବର ଦେବେ । ମୁଚୁକୁନ୍ଦ କହିଲେ ଯେ କୃଷ୍ଣଦର୍ଶନ ପର୍ଯ୍ୟନ୍ତ ସେ ଗୋଟିଏ ଗୁମ୍ଫା ଭିତରେ ଥିବେ । ଯଦି କେହି ତାଙ୍କ ଯୋଗନିଦ୍ରା ଭଙ୍ଗ କରେ ତେବେ ସେ ଚାହିଁବା ମାତ୍ରେ ତାକୁ ଭସ୍ମ କରିଦେବେ । ଏତେଦିନ ପରେ ଏପରି ଘଟିଲା । କାଳଯବନ ମରିବା ପରେ ଶ୍ରୀକୃଷ୍ଣ ମୁଚୁକୁନ୍ଦଙ୍କୁ ଦର୍ଶନ ଦେଇଲ ଓ କୈବଲ୍ୟ ମୁକ୍ତିର ବର ଦେଲେ ।

ବିଷ୍ଣୁଙ୍କର ଦ୍ୱାରପାଳ ଜୟ ଶିଶୁପାଳ ହୋଇ ଚେଦି ରାଜା ଦମଘୋଷଙ୍କ ପୁତ୍ର ରୂପେ ଜନ୍ମ ନେଲା । ଜନ୍ମବେଳେ ତା'ର ଚାରିହାତ ଓ ତିନୋଟି ଆଖି ଥାଏ । ଜନ୍ମବେଳେ ଆକାଶବାଣୀ ହୋଇଥିଲା ଯିଏ ପିଲାକୁ ସ୍ପର୍ଶ



କରିବାମାତ୍ରେ ତା'ର ଦୁଇ ହାତ ଓ ଗୋଟିଏ ଆଖି ଉଭେଇ ଯିବ ତା'ରି ହାତରେ ତା'ର ମୃତ୍ୟୁ ହେବ।

ଶିଶୁପାଳର ମା' କୃଷ୍ଣ ବଳରାମଙ୍କର ପିଉସୀ। କୃଷ୍ଣ ପିଉସି ଘର ଯାଇ ଖୁସିରେ ଶିଶୁକୁ କୋଳକୁ ଉଠାଇ ନିଅନ୍ତେ ତା'ର ଆଖିଟିଏ ଓ ଦୁଇଟି ହାତ ଅଦୃଶ୍ୟ ହୋଇଗଲା। ତା'ର ମା' ସବୁକଥା କୃଷ୍ଣଙ୍କୁ କହି ନିବେଦନ କଲେ କି ଶିଶୁପାଳର ଶହେ ଦୋଷ ଯେପରି କୃଷ୍ଣ କ୍ଷମା କରନ୍ତି।

ଶିଶୁପାଳ ବଡ଼ହେବା ମାତ୍ରେ ଜରାସନ୍ଧ ସହିତ ବନ୍ଧୁତା କଲା ଓ ବାରମ୍ବାର କୃଷ୍ଣଙ୍କ ରାଜ୍ୟ ଆକ୍ରମଣ କଲା। ତେଣୁ କୃଷ୍ଣ ତାଙ୍କର ପରିବାରକୁ ନେଇ ଦ୍ୱାରକାରେ ସୁରକ୍ଷିତ କରି ନଗରୀ ଗଠନ କଲେ। ଦ୍ୱାରକାର ଚଉପଟରେ ସମୁଦ୍ର ଥାଏ।

ଜରାସନ୍ଧ ଓ ଶିଶୁପାଳ ଦୁହେଁ ମଥୁରାନଗରୀ ଜଳାଇ ଦେଲେ ଓ ଖୁସି ହେଲେ ଯେ ଶ୍ରୀକୃଷ୍ଣ ଓ ବଳରାମ ମଧ୍ୟ ଭସ୍ମ ହୋଇ ଯାଇଛନ୍ତି। ସେମାନେ ଯେତେବେଳେ ଆନନ୍ଦରେ ତୂରୀନାଦ କଲେ କୃଷ୍ଣ ସେତେବେଳେ ଦୂରରେ ଥାଇ ପାଞ୍ଚଜନ୍ୟ ଶଙ୍ଖ ଦ୍ୱାରା ଶଙ୍ଖନାଦ କଲେ। ସେମାନେ କୃଷ୍ଣଙ୍କ ଶଙ୍ଖନାଦ ଶୁଣି ବହୁତ ବିମର୍ଷ ହୋଇଗଲେ। ଜରାସନ୍ଧ ପୁଣି ଦ୍ୱାରକାରେ ଗୋଳମାଳ ସୃଷ୍ଟି କରିବା ପାଇଁ ସମୁଦ୍ର କୂଳରେ ଯାଇ ପହଞ୍ଚିଲା। କୃଷ୍ଣ ସମୁଦ୍ର ମଧ୍ୟରେ ଥାଇ କହିଲେ, "ବନ୍ଧୋ, ମନ କାହିଁକି ଦୁଃଖ? ଆଜି ଏଣିକି ତମେ କିଛି କରି ପାରିବ ନାହିଁ।" ଜରାସନ୍ଧ କେତେକ ସୈନ୍ୟ ନୌକା ଦ୍ୱାରା ପଠାଇ ଥିଲା କିନ୍ତୁ ଝଡ଼ ହୋଇ ସେମାନେ ମଲେ। ପୁଣି କୃଷ୍ଣ କହିଲେ, "ମୋ ହାତରେ ମରିବା ତମ ଭାଗ୍ୟରେ ନାହିଁ। ତୁମକୁ ତୁମପରି ଆଉ ଜଣେ ବଳବାନ୍ ମାରିବ।" ଜରାସନ୍ଧ ଫେରିଗଲା।

ବିଦର୍ଭର ରାଜା ଭୀଷ୍ମକଙ୍କ କନ୍ୟା ରୁକ୍ମିଣୀ ଲକ୍ଷ୍ମୀ ଅଂଶ ସମ୍ଭୂତା। ସେ ପିଲାଟିକାଳରୁ କୃଷ୍ଣଙ୍କୁହିଁ ତାଙ୍କର ସ୍ୱାମୀ ବୋଲି ଭାବୁଥା'ନ୍ତି। ଇତମଧ୍ୟରେ ରୁକ୍ମିଣୀଙ୍କ ଭାଇ ରୁକ୍ମ ତାଙ୍କର ବନ୍ଧୁ ଶିଶୁପାଳଙ୍କୁ ରୁକ୍ମିଣୀଙ୍କୁ ବିବାହ ଦେବାକୁ

ସ୍ଥିର କଲେ । ରୁକ୍ମିଣୀ ବ୍ୟସ୍ତ ହୋଇ କୃଷ୍ଣଙ୍କ ପାଖକୁ ସବୁ ଜଣାଇ ଚିଠି ଲେଖିଲେ । ବିବାହ ଦିନ କନ୍ୟା ରୁକ୍ମିଣୀ ଦୁର୍ଗାମନ୍ଦିରରୁ ଫେରିବା ବେଳେ କୃଷ୍ଣ ତାଙ୍କୁ ରଥରେ ବସାଇ ନେଇଗଲେ । ଶିଶୁପାଳ ଓ ଭୀଷ୍ମକଙ୍କ ସୈନ୍ୟ-ମାନେ ପଥ ରୋଧ କରିବାକୁ ଚେଷ୍ଟା କଲେ, କିନ୍ତୁ ଆଗରୁ ବଳରାମ ଯାଦବସେନା ଧରି ସେଠାରେ ଥିଲେ । କୃଷ୍ଣ ଓ ବଳରାମ ଶତ୍ରୁପକ୍ଷ ସୈନ୍ୟ-ମାନଙ୍କୁ ପରାସ୍ତ କରି କନ୍ୟା ନେଇ ଘରକୁ ଫେରିଲେ । ଦ୍ୱାରକାରେ କୃଷ୍ଣ ଓ ରୁକ୍ମିଣୀଙ୍କର ବିବାହ ମହାଡ଼ମ୍ବରରେ ସମ୍ପନ୍ନ ହେଲା ।

ତା'ପରେ ସତ୍ରାଜିତଙ୍କ କନ୍ୟା ସତ୍ୟଭାମାଙ୍କ ସହିତ ମଧ୍ୟ କୃଷ୍ଣଙ୍କର ବିବାହ ହେଲା । ସତ୍ରାଜିତଙ୍କ ପାଖରେ ଥିବା ସ୍ୟମନ୍ତକ ମଣି ଥରେ ହଜିଗଲା । ସେମାନେ ଭାବିଲେ କୃଷ୍ଣ ବିବାହ ସମୟରେ ନେଇ ଯାଇଛନ୍ତି । ତେଣୁ ମିଥ୍ୟା ଦୋଷାରୋପ କଲେ । ପ୍ରକୃତରେ ସତ୍ରାଜିତଙ୍କ ଭାଇ ସେଇଟି ନେଇ ବଣରେ ଯାଉଥିବା ବେଳେ ବାଘ ତାଙ୍କୁ ଖାଇଲା । ମଣିଟି ତ୍ରେତୟାଯୁଗର ଭାଲୁ ଜାମ୍ବବାନ୍ ପାଇ ରଖିଥିଲେ । କୃଷ୍ଣ ତାଙ୍କ ଉପରେ ହେଉଥିବା ଦୋଷାରୋପକୁ ମିଥ୍ୟା ପ୍ରମାଣିତ କରିବା ପାଇଁ ମଣି ଖୋଜି ଖୋଜି ସେଇ ଭାଲୁଗୁମ୍ଫାରେ ପହଞ୍ଚିଲେ । ଜାମ୍ବବାନଙ୍କ ସହ ଯୁଦ୍ଧ ହେଲା । କିନ୍ତୁ ଜାମ୍ବବାନ ମଧ୍ୟ ଜ୍ଞାନୀ ଥିଲେ ଓ ସେ କୃଷ୍ଣଙ୍କୁ ଭଗବାନ୍ ବୋଲି ଜାଣି ପାରି ଯୁଦ୍ଧ ବନ୍ଦ କରି କହିଲେ କି ମଣିଟିକୁ ଯିଏ ନେବ ସେ ତାଙ୍କ ଝିଅକୁ ବାହାହେବ । ତାଙ୍କର ଗୋଟିଏ ପରମାସୁନ୍ଦରୀ ଝିଅ ଥିଲା । ତାଙ୍କ ନାମ ଥିଲା ଜାମ୍ବବତୀ । ତାଙ୍କୁ କୃଷ୍ଣ ବିବାହ କରି ମଣି ଆଣି ସତ୍ରାଜିତଙ୍କୁ ଫେରାଇଲେ ।

ଏଇ ତିନି ସ୍ତ୍ରୀଙ୍କ ବ୍ୟତୀତ ଶ୍ରୀକୃଷ୍ଣଙ୍କର କାଳନ୍ଦୀ, ଲକ୍ଷଣା, ଭଦ୍ରା, ମିତ୍ରାବିନ୍ଦା, ଓ ନଗ୍ନଜିତ ନାମକ ଆହୁରି ପାଞ୍ଚଜଣ ସ୍ତ୍ରୀ ଥିଲେ । ସେ ସମସ୍ତଙ୍କୁ ଶ୍ରୀକୃଷ୍ଣଙ୍କର "ଅଷ୍ଟପଟ୍ଟମହିଷୀ" ବୋଲି କୁହା ଯାଉଥିଲା ।






# ଆଜି କର୍ମ କାଲି ଫଳ

ଆରବ ଭୂଖଣ୍ଡର ଏକ ରାଜ୍ୟରେ ଜଣେ ଉଦ୍ଦଣ୍ଡ ସୁଲ୍‌ତାନ୍ ଥିଲେ । ସେ କଥାରେ କଥାରେ ରାଗି ଯାଉଥିଲେ ଓ ଯାହା ଉପରେ ରାଗୁଥିଲେ, ତାକୁ କଠୋର ଦଣ୍ଡ ଦେଉଥିଲେ ।

ଦିନେ ସେ ଶୀକାର କରିବାକୁ ଯାଇଥାନ୍ତି । ବଣ ଭିତରେ ଗୋଟିଏ ସୁନ୍ଦର ହରିଣ ଦେଖି ତାକୁ ମାରିବାକୁ ଦୌଡ଼ିଲେ । କିନ୍ତୁ ହରିଣଟି ବିଜୁଳି ବେଗରେ ତାଙ୍କ ଆଗରୁ ପଳାଇ ଯାଉଥାଏ । ସେ ନିଜ ଦେହରକ୍ଷୀମାନଙ୍କୁ କହିଲେ, "ଯିଏ ପାରୁଛ, ଏହାକୁ ମାର ।"

ସମସ୍ତେ ହରିଣକୁ ଖୋଜିବାକୁ ଲଗିଲେ । ସୁଲ୍‌ତାନ୍‌ଙ୍କ ଦେହରକ୍ଷୀଦଳରେ ନୂଆ କରି ଜଣେ ଯୁବକ ଯୋଗ ଦେଇଥାଏ । ସେ ଯୁବକ ଦେଖିଲା ହରିଣଟି ଗୋଟିଏ ବୁଦା ଭିତରେ ଲୁଚିଛି । ସେ ଧନୁ ଉଠାଇ ତାକୁ ଲକ୍ଷ୍ୟ କରି ତୀର ଛାଡ଼ିବା ବେଳକୁ ସୁଲ୍‌ତାନ୍ ସେ ଯୁବକ ଓ ବୁଦା ମଝିକୁ ଦୌଡି ଆସିଲେ ଫଳରେ ତୀରଟି ସୁଲ୍‌ତାନ୍‌ଙ୍କ କାନକୁ ଛୁଇଁ ବାହାରିଗଲା । ସୁଲ୍‌ତାନ୍‌ଙ୍କ କାନର ଗୋଟିଏ ଅଂଶ କଟିଗଲା ।

ସୁଲ୍‌ତାନ୍ କ୍ରୋଧାନ୍ଧ ହୋଇ କହିଲେ, "କିଏ ଏପରି କଲା ? ମୃତ୍ୟୁ ତା'ର ଶାସ୍ତି !"

ତୀର ମାରିଥିବା ଯୁବକକୁ ସଙ୍ଗେ ସଙ୍ଗେ ଅନ୍ୟ ଦେହରକ୍ଷୀମାନେ ଧରି ପକାଇଲେ । ଯୁବକ ସୁଲତାନ୍‌ଙ୍କ ଆଗକୁ ଆସି ନମ୍ର ଓ ଧୀର କଣ୍ଠରେ କହିଲା, "ସୁଲତାନ୍ ମହୋଦୟ, ମୋତେ ପ୍ରାଣଦଣ୍ଡ ଦେଲେ ଅନ୍ୟାୟ ହେବ । ମୁଁ ଆପଣଙ୍କ ଆଦେଶ ମାନି ହରିଣକୁ ଦେଖି ପକାଇବା ମାତ୍ରେ ତୀର ମାରିଲି । ଆପଣ ସେତିକିବେଳେ ଆଗକୁ ଆସିଯିବେ, ଏହା ମୁଁ ଜାଣି ନଥିଲି । ଅବଶ୍ୟ ଆପଣଙ୍କ ଗତିବିଧି ପ୍ରତି ଦୃଷ୍ଟି ରଖି କାମ କରିବା ମୋର ଉଚିତ

ଆରବ ଦେଶର କାହାଣୀ



ଥିଲା । ତାହା ମୁଁ କରି ପାରିନାହିଁ । ମୁଁ ସେ ଅପରାଧରେ ଅପରାଧୀ । ସେଥିପାଇଁ ମୋତେ କିଛି ଲଘୁ ଦଣ୍ଡ ଦେଇ ପାରନ୍ତି ।"

ଯୁବକର କଥାବାର୍ତ୍ତାରେ ଏପରି ଗୋଟିଏ ଭାବ ଥିଲା, ଯାହାର ପ୍ରଭାବ ସୁଲତାନ୍‌ଙ୍କ ଉପରେ ପଡ଼ିଲା । ସେ ଯୁବକକୁ କୌଣସି ଦଣ୍ଡ ଦେଲେ ନାହିଁ । ସୁଲତାନ୍‌ଙ୍କ ବୈଦ୍ୟ ଆସି ସଙ୍ଗେ ସଙ୍ଗେ ଔଷଧ ଦେଲେ ।

ଏହାର କିଛିଦିନ ପରେ ଦିନେ ସେ ଦେହରକ୍ଷୀ ଯୁବକ କାହାକୁ କିଛି ନ କହି କୁଆଡ଼େ ଚାଲିଗଲା ।

ସମୁଦ୍ର ଭିତରେ ଗୋଟିଏ ଦ୍ୱୀପ ସୁଲତାନ୍‌ଙ୍କ ଅଧୀନରେ ଥାଏ । କେଇବର୍ଷ ପରର କଥା । ସୁଲ୍‌ତାନ୍ ସେ ଦ୍ୱୀପ ଅଭିମୁଖେ ଜାହାଜ ଚଢ଼ି ଯାଉଥାନ୍ତି । ବାଟରେ ହେଲା ଭୀଷଣ ଝଡ଼ । ଜାହାଜ ଟଳମଳ ହେବା ଅବସ୍ଥାରେ ସମୁଦ୍ରରେ ଲୁକ୍କାୟିତ ଗୋଟିଏ ପାହାଡ଼ ସହ ଧକ୍କା ଖାଇ ଭାଙ୍ଗିଗଲା । ସମସ୍ତେ କୁଆଡ଼େ ହଜିଗଲେ । ସୁଲତାନ୍ ଖଣ୍ଡିଏ କାଠ ଉପରେ ଭର ଦେଇ ଭାସି ରହିଲେ ଓ ଅନ୍ୟ ଗୋଟିଏ ଦେଶର ଉପକୂଳରେ ଯାଇ ଲାଗିଲେ ।

ସେତେବେଳକୁ ରାତି । ସୁଲତାନଙ୍କ ପଗଡ଼ି ସମୁଦ୍ରରେ ହଜି ଯାଇଥାଏ । ପୋଷାକ ପତ୍ର ଛିଣ୍ଡି ଯାଇଥାଏ । ସେ ଅବସ୍ଥାରେ ତାଙ୍କୁ ସୁଲ୍‌ତାନ୍ ବୋଲି ଚିହ୍ନିବ କିଏ ? ସେ କୁଆଡ଼େ ଯିବେ, କ'ଣ କରିବେ, କିଛି ସ୍ଥିର କରି ପାରିଲେ ନାହିଁ । କ୍ଳାନ୍ତି ଯୋଗୁଁ ପାଦ ବି ଚଳୁ ନଥାଏ । ସେ ଠାଏଁ ଶୋଇ ପଡ଼ିଲେ ।

ସକାଳେ ଦୁଇଜଣ ସିପାହୀଙ୍କ ଗୋଇଠା ମାଡ଼ ଖାଇ ତାଙ୍କ ନିଦ ଭାଙ୍ଗିଲା । ସେ ବଲବଲ ହୋଇ ଅନାଇ ରହିଲେ । ସିପାହୀ ଦୁଇଜଣ ଅଳ୍ପ ଦୂରରେ ପଡ଼ିଥିବା ଗୋଟାଏ ଶବ ଦେଖାଇ କହିଲେ, "କିଏ ମାରିଛି ?"

"ମୁଁ କେମିତି ଜାଣିବି ? ମୁଁ ଏଠି ଆସି ଶୋଇଲାବେଳେ ପାଖରେ କିଛି ନଥିଲା । ତମେମାନେ ମୋତେ ଗୋଇଠା ମାରିବାକୁ କିଏ ?" ସୁଲ୍‌ତାନ୍ ପଚାରିଲେ ।

"ଆମେ କିଏ ? ଆମ କାମ ଉପରେ ପ୍ରଶ୍ନ କରିବ, ଏଭଳି ମଣିଷ ପୁଣି ଅଛନ୍ତି ?

ଚାଲ୍, ଚାଲ୍, ନବାବ୍‌ଙ୍କ ପାଖକୁ ଚାଲ୍ ।" ଏହା କହି ସିପାହୀ ଦୁଇଜଣ ସୁଲ୍‌ତାନ୍‌ଙ୍କୁ ସେ ଦେଶର ନବାବ୍‌ଙ୍କ ପାଖକୁ ଧରି ନେଇଗଲେ ।

ନବାବ୍ ସବୁ ଶୁଣି ଆଦେଶ ଦେଲେ, ଏହାକୁ କାରାଗାରରେ ରଖ !"

ସୁଲତାନ୍ ମନେ ମନେ ଭାବିଲେ, "ଏଭଳି ପରିସ୍ଥିତିରେ ମୁଁ ତ କେତେଲୋକଙ୍କୁ ପ୍ରାଣଦଣ୍ଡ ଆଦେଶ ଦେଇଛି । ଇଏ ଯେ ମୋତେ କାରାଦଣ୍ଡ ମାତ୍ର ଦେଲେ, ଏହା ମୋର ସୌଭାଗ୍ୟ ଛଡ଼ା ଆଉ କ'ଣ ?"

ସୁଲ୍‌ତାନ କାରାଗାର ଭିତରେ ପଡ଼ିଥାନ୍ତି । ମଧ୍ୟେ ମଧ୍ୟେ ତାଙ୍କ କୋଠରୀର ଝରକା ଉପରେ ବସିପଡ଼ି ଗୋଟାଏ କାଉ ରାବୁଥାଏ । ଦିନେ ସେ ଅତ୍ୟନ୍ତ ବିରକ୍ତ ହୋଇ ଚଟାଣରେ ପଡ଼ିଥିବା ଗୋଟିଏ ଛୋଟ ଢେଲା ଉଠାଇ ନେଇ ସେ କାଉକୁ ଲକ୍ଷ୍ୟ କରି ଖୁବ୍ ଜୋରରେ ଫୋପାଡ଼ିଲେ । କାଉ କିନ୍ତୁ ଢେଲା ଝରକା ଭିତରେ ପଶିବା ପୂର୍ବରୁ ଉଡ଼ି ପଳାଇଗଲା । ସୁଲ୍‌ତାନ ଭାବିଲେ, "ଦେଖୁଛି ଏତେ ହନସ୍ତା ହେବା ସତ୍ତ୍ୱେ ମୋ ଉଦ୍ଦଣ୍ଡ ସ୍ୱଭାବ ମୋତେ ଛାଡ଼ି ନାହିଁ । ଏଣିକି ଆଉ ଏପରି ହେବ ନାହିଁ ।"

ଟିକିଏ ସମୟ ପରେ ତାଙ୍କ କୋଠରୀର ଦ୍ୱାର ଖୋଲିଗଲା । ଜଗୁଆଳମାନେ ଆସି ତାଙ୍କୁ ଧରି ଟାଣି ଟାଣି ସଭାକୁ ନେଇ



ଆସିଲେ । ସଭାରେ ନବାବଙ୍କ ପୁଅ ନିଜ କାନରେ ହାତ ଦେଇ ଠିଆ ହୋଇଥାନ୍ତି । ବୈଦ୍ୟ ଆସି କାନରେ ଔଷଧ ଲଗାଇବା ପରେ ସେ ବନ୍ଦୀ ସୁଲ୍‌ତାନ୍ ଆଡ଼େ ଦୃଷ୍ଟି ଦେଲେ ଓ ପଚାରିଲେ, "ତୋର ଏଡ଼େ ସାହସ, ତୁ ଝରକା ଦେଇ ମୋ ଆଡ଼େ ଢେଲା ମାରିଲୁ ? ଏପରି ଔଦ୍ଧତ୍ୟର ଶାସ୍ତି କ'ଣ ହୋଇପାରେ ତାହା ଜାଣୁ ? ପ୍ରାଣଦଣ୍ଡ !"

ନବାବଙ୍କ ପୁଅ ତାଙ୍କ ବନ୍ଧୁମାନଙ୍କ ସଙ୍ଗେ ବାଟରେ ଠିଆ ହୋଇ ଗପସପ ହେଉଥିଲେ । ସୁଲ୍‌ତାନ୍‌ଙ୍କ ଢେଲା ଯାଇ ତାଙ୍କରି କାନକୁ ଖଣ୍ଡିଆ କରି ପକାଇଥିଲା ।

"ହଜୁର୍ ! ମୁଁ ଗୋଟାଏ କାଉ ଆଡ଼େ ଲକ୍ଷ୍ୟ କରି ଢେଲା ମାରିଥିଲି । ରାସ୍ତାରେ କେହି ଥାଇ ପାରନ୍ତି ବୋଲି ମୋର ଭାବିବା ଉଚିତ ଥିଲା । କିନ୍ତୁ ମୁଁ ତାହା ଭାବି ନଥିବାରୁ ଦୁଃଖିତ ।" ସୁଲତାନ୍ କହିଲେ ।

ସୁଲ୍‌ତାନ୍‌ଙ୍କ କଣ୍ଠସ୍ୱର ଶୁଣି ନବାବଙ୍କ ପୁଅ ଚମକି ପଡ଼ି ତାଙ୍କ ପାଖକୁ ଘୁଞ୍ଚି ଆସି ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନାଇଲେ ଓ ପଚାରିଲେ, "ତୁମ କାନ ଖଣ୍ଡିଆ ହେଲା କିପରି ?"

ସୁଲତାନ୍ କହିଲେ, "ହଜୁର୍, ଆଜି ଯେପରି ମୋ ଅଜାଣତରେ ମୁଁ ଆପଣଙ୍କ କାନ ଖଣ୍ଡିଆ କରି ପକାଇଲି, ସେହିପରି ଦିନେ ଅଜାଣତରେ ମୋର ଜଣେ ଦେହରକ୍ଷୀ ମୋ କାନ ଖଣ୍ଡିଆ କରି ପକାଇଥିଲା ।"

"ସୁଲତାନ୍ ! ଆପଣ ସେ ଯୁବକକୁ କି ଦଣ୍ଡ ଦେଇଥିଲେ ?" ନବାବ୍‌ଙ୍କ ପୁଅ ପଚାରିଲେ ।

ସୁଲତାନ ଚମକିପଡ଼ି ତାଙ୍କ ଆଡ଼େ ଅନାଇ ରହିଲେ । ତାଙ୍କ ବିସ୍ମୟର ସୀମା ରହିଲା ନାହିଁ । ସେ ଦିନର ସେ ଦେହରକ୍ଷୀ ଆଉ କେହି ନୁହେଁ, ଏହି ନବାବ-ପୁତ୍ର !

ନବାବ-ପୁତ୍ର ସୁଲ୍‌ତାନ୍‌ଙ୍କୁ ଭୁଣ୍ଡାଇ ପକାଇଲେ । ଥରେ ବାପାଙ୍କ ଉପରେ ଅଭିମାନ କରି ସେ ପଳାଇ ଯାଇ କିପରି ସୁଲ୍‌ତାନ୍‌ଙ୍କଠି ଚାକିରି ନେଇ ରହିଥିଲେ, ବାପାଙ୍କ ଗୁପ୍ତଚର କିପରି ତାଙ୍କୁ ଠାବ କରି ବାପାଙ୍କୁ ଖବର ଦେଲେ ଓ ନବାବ୍ କିପରି ଛଦ୍ମବେଶରେ ଯାଇ ପୁଅକୁ ଫେରାଇ ଆଣିଲେ, ଯୁବକ ଏସବୁ ଜଣାଇଲେ । ସୁଲ୍‌ତାନ୍ କିପରି ପରିସ୍ଥିତିରେ ସେ ରାଜ୍ୟରେ ଆସି ପହଞ୍ଚିଲେ, ସେସବୁ ମଧ୍ୟ ଶୁଣିଲେ ।

ସୁଲ୍‌ତାନ୍‌ଙ୍କ ନବାବ ବିପୁଳ ସମ୍ବର୍ଦ୍ଧନା ଦେଲେ । ନୂଆ ଜାହାଜରେ ସେ ତାଙ୍କ ଦେଶକୁ ଫେରିଯିବା ସକାଶେ ବ୍ୟବସ୍ଥା କରାଗଲା ।



# ଦୁଃଖ-ରହସ୍ୟ

ବିମଳ ଗରିବ ହେଲେ କ'ଣ ହେବ, ସବୁବେଳେ ହସ ଖୁସିରେ ଥାଏ । ଖୁସ୍‌ମେଜାଜ୍‌ର ଲୋକ ବୋଲି ତାକୁ ସମସ୍ତେ ଜାଣୁଥିଲେ ।

କିନ୍ତୁ ତା' ବନ୍ଧୁ ସୁରେଶ ଲକ୍ଷ୍ୟ କଲା, ସେ ତା' ବଡ଼ମାମୁଁର ଶ୍ରାଦ୍ଧରୁ ଫେରିବା ପରଠୁଁ ସର୍ବଦା ଗମ୍ଭୀର ରହୁଛି ।

ଦିନେ ସୁରେଶ ପଚାରିଲା, "ବିମଳ ! ତୋ ମନରେ ସୁଖ ନାହିଁ କାହିଁକି ? ମାମୁଁ ଚାଲିଗଲେ ତ ଚାଲିଗଲେ । ବୟସ ହୋଇ ଯାଇଥିଲା । ଦୁଃଖ କ'ଣ ?"

"ଆରେ, ଦୁଃଖ କ'ଣ ସେଥିପାଇଁ ? ମାମୁଁ ନିଃସନ୍ତାନ ଥିବାରୁ ତାଙ୍କର ସବୁ ସମ୍ପତ୍ତି ମୋତେ ମିଳିଲା । ପୁଣି ମୋ ନିଃସନ୍ତାନ ମଉସା ମରିଗଲେ । ତାଙ୍କର ସବୁ ସମ୍ପତ୍ତି ବି ସେ ମୋ ନାମରେ ଲେଖିଦେଇ ଯାଇଛନ୍ତି !" ବିମଳ କହିଲା ।

"ତେବେ ତୋ ଦୁଃଖର କାରଣ କ'ଣ ?" ଆଶ୍ଚର୍ଯ୍ୟ ହୋଇ ସୁରେଶ ପଚାରିଲା ।

"ଦୁଃଖର କାରଣ ହେଲା, ମୋ ଜ୍ଞାତି କୁଟୁମ୍ବ ଭିତରେ ଆଉ କେହି ନିଃସନ୍ତାନ ନାହାନ୍ତି ।" ବିମଳ ବୁଝାଇଦେଲା ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

ପୁରସ୍କୃତ ପରିଚୟୋକ୍ତି ଅଗଷ୍ଟ ୧୯୮୪ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



Suraj N. Sharma

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁନ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

---

### ଏପ୍ରିଲ୍ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଶକ୍ତି ଅମାପ ଦେହେ ବନ୍ଧନ !

ଦ୍ୱିତୀୟ ଚିତ୍ର : କ୍ଷୁଦ୍ର ସିନା, ଆମେ ଅଟୁ ସ୍ୱାଧୀନ !!

ପୁରସ୍କାର ବିଜୟିନୀ : ବାସନ୍ତୀ କୁମାରୀ ପଣ୍ଡା, ବରି।

ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

### ପ୍ରଶ୍ନମାଳାର ଉତ୍ତର

୧. ଫରାସୀ ସାହିତ୍ୟିକ ରେନେ ଫ୍ରାଙ୍କୋଇ ଆର୍ମୋଣ୍ଡ ପ୍ରୁଧୋମ। ୨. ଫରାସୀ ମନୀଷୀ ଜେ. ହେନ୍ରି ଡ୍ୟୁନାଣ୍ଟ୍। ୩. ଜର୍ମାନୀର ୱିଲ୍ ହେଲ୍ମ୍ କୋନ୍ରାଡ୍ ରୋଣ୍ଟଜେନ୍। ୪. ହଲାଣ୍ଡର ଜାକୋବସ୍ ହେନ୍ଡ୍ରିକାସ୍ ଭାଣ୍ଟ୍ ହାଫ୍। ୫. ଜର୍ମାନୀର ଏମିଲ୍ ଭାନ୍ ବେହ୍ରିଙ୍ଗ୍।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India). Controlling Editor: NAGI REDDI.

# ରାମ ଓ ଶ୍ୟାମ

## ପଞ୍ଚଭୂଜ ପାଠ୍ୟକ୍ରମରେ

Anil Kumar Panigrahy






















